ଉପାନ୍ତ ଅଞ୍ଚଳ ଭାଷା ସାହିତ୍ୟର ଜାଗ୍ରତ ପ୍ରହରୀ

# ବିକ୍ରମଦେବ ବର୍ମା

ଡକ୍ଟର ବାସନ୍ତୀ ମହାନ୍ତି



## ସମଗ୍ର ସୃଜନ

**ଗଳ୍ପ**

ଭାଙ୍ଗିଜେମା, ବିଲେଇ ଓ ଦୁଇ ପ୍ରସଙ୍ଗ
ପିତୃ ଋଣ
ଅଭିଯୁକ୍ତା
ସୁଲିଆପାର ଭାତୁଡି
ମା'
ହାତପାପୁଲିରେ ଜୀବନ
ଶୀତ କୁଡିଆଣୀ
ଉତ୍ତରଣ
ନିର୍ବାଚିତ ଗଳ୍ପ
କୁନ୍ତୀ
ଡ଼ଙ୍ଗର କନ୍ୟା

**ପ୍ରବନ୍ଧ ଓ ସ୍ତମ୍ଭ**

ପ୍ରଗତୀ ଓ ପରମ୍ପରା
ପ୍ରଳୟପରର ଜୀବନ
ଦୃଷ୍ଟି ଓ ଦିଗନ୍ତ
ନାରୀ ନୀତି ନିୟତି
ଭୋକ ବିଳାସ

**ସାହିତ୍ୟ ସମାଲୋଚନା**

ନୀଳଶୈଳର ପଦଚାରୀ
ସୁରେନ୍ଦ୍ର ମହାନ୍ତିଙ୍କ କଥା କୋଣାର୍କ

**ଅନୁବାଦ**

ନିଃସଙ୍ଗ ଯୋଦ୍ଧା
ଗାନ୍ଧୀଙ୍କୁ ଫେରାଇ ଆଣିବା

**ଇତିହାସ**

ପାପଡ଼ା ହାଣ୍ଡିରେ ଭାରତଛାଡ ଆନ୍ଦୋଳନ

**ଲୋକକଥା ସଂଗ୍ରହ**

କଳାହାଣ୍ଡିର ଲୋକକଥା

**ଜୀବନୀ**

ମହମ୍ମଦ ବାଜୀ
ବଗା ପୂଜାରୀ

ଉପାନ୍ତ ଅଞ୍ଚଳ ଭାଷା ସାହିତ୍ୟର ଜାଗ୍ରତ ପ୍ରହରୀ

# ବିକ୍ରମଦେବ ବର୍ମା

ଡ଼. ବାସନ୍ତୀ ମହାନ୍ତି



ଓଡ଼ିଆ ବଜାର, କଟକ-୧

ଉପାନ୍ତ ଅଞ୍ଚଳ ଭାଷା ସାହିତ୍ୟର ଜାଗ୍ରତ ପ୍ରହରୀ

**ବିକ୍ରମଦେବ ବର୍ମା**

**ଡ଼. ବାସନ୍ତୀ ମହାନ୍ତି**

ପ୍ରଥମ ପ୍ରକାଶନ : ୨୦୨୦

ପ୍ରକାଶକ : ତିଥି ବୁକ୍‌ସ, ଓଡ଼ିଆ ବଜାର, କଟକ-୭୫୩ ୦୦୧ ।

ମୁଦ୍ରଣ : ତିଥି ଅଫସେଟ୍, ଓଡ଼ିଆ ବଜାର, କଟକ ।

ମୂଲ୍ୟ : ୭୦ ଟଙ୍କା




Upanta Anchal Bhasa Sahityara Jagrata Prahari

**Vikramdev Verma**

By **Dr. Basanti Mohanty**

First Edition : 2020

Published By : **TITHI BOOKS**,
Odia Bazar, Cuttack-1.

Printed at : **Tithi Offset**,
Odia bazar, Cuttack.

Price : **Rs. 70/-**

# ଭୂମିକା

ଭାଷାର ସଂକଟ ସର୍ବଦା ଉପାନ୍ତ ଅଞ୍ଚଳରୁ ସୃଷ୍ଟି ହୋଇଥାଏ। ପ୍ରାଦେଶିକ ଭାଷା ପ୍ରଭାବରୁ କଥିତ ଭାଷାକୁ ନିୟନ୍ତିତ କରିବା ଦୁଃସାଧ ବ୍ୟାପାର। କିନ୍ତୁ ଲିଖିତ ସାହିତ୍ୟ ମାଧମରେ ଭାଷାର ମୌଳିକତା ଅକ୍ଷୁଣ୍ଣ ରଖିବାର ପ୍ରଚେଷ୍ଟା ସର୍ବଥା ସ୍ୱାଗତଯୋଗ୍ୟ। ଓଡ଼ିଶାର ଉପାନ୍ତ ଅଞ୍ଚଳଗୁଡ଼ିକ ହିନ୍ଦୀ, ବଙ୍ଗଳା ଓ ତେଲୁଗୁ ଭାଷାଦ୍ୱାରା କବଳିତ। ଓଡ଼ିଶାର ଏକତ୍ରୀକରଣର ଅବ୍ୟବହିତ ପୂର୍ବରୁ ଆମ ଭାଷାର ସୁରକ୍ଷା ଆମପାଇଁ ଏକ ଆହ୍ୱାନ ଥିଲା। ବାଲେଶ୍ୱରରୁ ଫକୀର ମୋହନ ସେନାପତି ଓ ରାଧାନାଥ ରାୟ ସମ୍ବଲପୁରରୁ ଗଙ୍ଗାଧର ମେହେର ଯେପରି ଭାଷା ସାହିତ୍ୟ ସୁରକ୍ଷା ପାଇଁ ତାଙ୍କର ଲେଖନୀକୁ ଅସ୍ତ୍ର ରୂପେ ପରିଚାଳନା କରିଥିଲେ, ଆଦିବାସୀ ଅଧ୍ୟୁଷିତ, ଘଞ୍ଚବନାନୀ ଓ ପାହାଡ଼ ପର୍ବତ ପରିବେଷ୍ଟିତ ଉପାନ୍ତ ଅଞ୍ଚଳ ତତକାଳୀନ ଜୟପୁର ରାଜ୍ୟ ଓ ଏବେର ଅବଭକ୍ତ କୋରାପୁଟ ଜିଲ୍ଲାର ସାହିତ୍ୟ ସଂସ୍କୃତିକୁ ସେହିପରି ବଞ୍ଚାଇ ରଖିଥିଲେ ଜୟପୁର ରାଜବଂଶର ସୁଯୋଗ୍ୟ ଦାୟାଦ ରାଜା ବିକ୍ରମଦେବ ବର୍ମା। ଏହି ଉପାନ୍ତ ଅଞ୍ଚଳର ଭାଷା ସାହିତ୍ୟର ସେ ଜାଗ୍ରତ ପ୍ରହରୀ ସଦୃଶ ଥିଲେ। ରାଜପରିବାରର କଳହ ଯୋଗୁ ସେ ଶୈଶବରୁ ଦେଶାନ୍ତରୀ ଜୀବନ କାଟିଥିଲେ। ପରିପକ୍ୱ ବୟସରେ ଆନ୍ଧ୍ରପ୍ରଦେଶର ବିଶାଖାପାଟଣା ଥିଲା ତାଙ୍କର କର୍ମଭୂମି। ଜୀବନ ନିର୍ବାହର ନିର୍ଭରସ୍ଥଳୀ, କିନ୍ତୁ ଜନ୍ମମାଟି ଓଡ଼ିଶା ପ୍ରତି ଥିବା ମୋହ ମମତାରେ ତାଙ୍କର କାଣିଚାଏ ଊଣା ହୋଇ ନଥିଲା। ବିଶାଖାପାଟଣାରେ ଅବସ୍ଥାପିତ ହୋଇ ସୁଦ୍ଧା ସେ ଓଡ଼ିଶା ଓ ଓଡ଼ିଆଙ୍କ ପ୍ରତି ତାଙ୍କ କର୍ତ୍ତବ୍ୟ ଅବ୍ୟାହତ ରଖିଥିଲେ। ଓଡ଼ିଶାର ସୌଭାଗ୍ୟ ସେ ତାର ଏହି ବରେଣ୍ୟ ପୁତ୍ରଙ୍କୁ ପୁଣି ଫେରିପାଇଲା। ପରିଣତ ବୟସରେ ବିକ୍ରମଦେବ ବର୍ମା ବିଶାଖାପାଟଣାରୁ ଫେରିଆସି ଜୟପୁର ରାଜ ସିଂହାସନ ଆରୋହଣ କଲେ।

ଜଣେ ଦକ୍ଷ ଶାସକ ଭାବରେ ସେ କେବଳ ସର୍ବଜନ ବିଦିତ ନଥିଲେ, ଓଡ଼ିଆ ସାରସ୍ୱତ ଭଣ୍ଡାରକୁ ତାଙ୍କର ଅବଦାନ ଅତୁଳନୀୟ ଥିଲା। ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ଓଡ଼ିଆ ଭାଷା ସାହିତ୍ୟକୁ ଉପାନ୍ତ ଅଞ୍ଚଳରେ ଉଜ୍ଜୀବୀତ କରି ରଖିଥିଲେ। ତାଙ୍କ ରାଜ ଦରବାର କାବ୍ୟ ସାହିତ୍ୟ ଆଲୋଚନାର ମନୋଜ୍ଞ ସ୍ଥଳ ଥିଲା। ବହୁ ବିଦ୍ୱାନ, ପଣ୍ଡିତ ଓ ପ୍ରିତଭାଧର ତାଙ୍କ ରାଜସଭା ମଣ୍ଡନ କରୁଥିଲେ। ବହୁ

ଶାସ୍ତ୍ରଦର୍ଶିତା ଓ ତର୍କ ନିଷ୍ଠତା ତାଙ୍କ ସାରସ୍ୱତ ପ୍ରତିଭାକୁ ସାର୍ଥକ କରିପାରିଛି। ତାଙ୍କ ସୃଷ୍ଟି ସମ୍ଭାର ଓଡ଼ିଆ ସାରସ୍ୱତ ଗନ୍ତାଘରର ଅମୂଲ୍ୟ ସଂପଦ।

ଏପରି ଜଣେ ଅସାଧାରଣ ମନୀଷୀଙ୍କ ସାହିତ୍ୟ ସମ୍ଭାର ଯେତିକି ଆଲୋଚନା ପର୍ଯ୍ୟାଲୋଚନା ହେବା କଥା ତାହା ଏ ଯାବତ୍ ହୋଇନାହିଁ। ଏହି ଅଭାବବୋଧକୁ **'ଉପାନ୍ତ ଅଞ୍ଚଳ ଭାଷା ସାହିତ୍ୟର ଜାଗ୍ରତ ପ୍ରହରୀ ବିକ୍ରମଦେବ ବର୍ମା'ର ପରିକଳ୍ପନା।**

ଦୀର୍ଘଦିନ ଧରି ଉପାନ୍ତ ଅଞ୍ଚଳ ମୋ କର୍ମଭୂମି ଥିବାରୁ ବିକ୍ରମଦେବ ବର୍ମାଙ୍କ ଜୀବନୀ ଓ ସାରସ୍ୱତ ସମ୍ଭାର ଅଧ୍ୟୟନ କରିବାର ସୁଯୋଗ ପାଇଥିଲି। ତାଙ୍କ ସଂପର୍କରେ କିଛି କାମ କରିବାର ସୁପ୍ତ ଅଭିଳାଷଟିଏ ଅଙ୍କୁରିତ ହୋଇଥିଲା। ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ଅର୍ଥ ଅନୁଦାନ ମୋର ସେ ଅଭିଳାଷକୁ ନିବନ୍ଧ ରୂପ ଦେବାରେ ମୋତେ ସମର୍ଥ କରିଛି। ଏଥିପାଇଁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗଙ୍କ ନିକଟରେ ମୁଁ ମୋର କୃତଜ୍ଞତା ଜ୍ଞାପନ କରୁଛି।

ଏହି ଅବସରରେ ମୋତେ ସହାୟତା କରିଥିବା ଅନୁଷ୍ଠାନ ଓ ବ୍ୟକ୍ତିବିଶେଷଙ୍କୁ ସାଧୁବାଦ ଜଣାଉଛି।

ନିବନ୍ଧଟି ଆଗ୍ରହୀ ଗବେଷକ ଓ ସହୃଦୟ ପାଠକଙ୍କ କିଞ୍ଚିତ୍ ଆଦୃତ ଲାଭ କଲେ ମୋ ଶ୍ରମ ସାର୍ଥକ ହେଲା ବୋଲି ଜାଣିବି।

ନିବନ୍ଧିକା

# ଉପାନ୍ତ ଅଞ୍ଚଳ ଭାଷା ସାହିତ୍ୟର ଜାଗ୍ରତ ପ୍ରହରୀ
# ବିକ୍ରମଦେବ ବର୍ମା

## ସୂଚୀପତ୍ର


**ପ୍ରଥମ ଅଧ୍ୟାୟ:**
(କ) ଜୟପୁର ରାଜ୍ୟର ଉଦ୍ଭବ ଓ ବିସ୍ତୃତି
(ଖ) କିମ୍ବଦନ୍ତୀରେ ଜୟପୁର
(ଗ) ଇତିହାସରେ ଜୟପୁର
(ଘ) ଭୌଗୋଳିକ ସ୍ଥିତି
(ଙ) ସାମାଜିକ ସ୍ଥିତି
(ଚ) ପ୍ରାଦେଶିକ ସଂପର୍କ

**ଦ୍ୱିତୀୟ ଅଧ୍ୟାୟ**
**ବିକ୍ରମ ଦେବଙ୍କ ଜୀବନଧାରା**
(କ) ବାଲ୍ୟକୈଶୋର
(ଖ) ପାରିବାରିକ ପଟ୍ଟଚିତ୍ର ଓ ବିକ୍ରମଙ୍କ ପ୍ରବାସ ଜୀବନ
(ଗ) ବିକ୍ରମଦେବଙ୍କ ବ୍ୟକ୍ତିତ୍ୱ ବିକାଶର ପୀଠସ୍ଥଳ ବିଶାଖାପାଟଣା, ଜଗନ୍ମିତ୍ର ହଲ, ଓଡ଼ିଆ ସମାଜ
(ଘ) ଘରପୁଅ ଘରକୁ ଫେରିଲା

**ତୃତୀୟ ଅଧ୍ୟାୟ**
**ବିକ୍ରମ ଦେବଙ୍କ ବହୁବିଧ ପ୍ରତିଭା**
(କ) ଦେଶପ୍ରେମୀ ବିକ୍ରମ
(ଖ) ଦେଶମିଶ୍ରଣ ଆନ୍ଦୋଳନରେ ବିକ୍ରମଙ୍କ ଭୂମିକା
(ଗ) ପ୍ରଜାନୁରଞ୍ଜକ ରାଜା ବିକ୍ରମ
(ଘ) ସଂସ୍କୃତି ପୁରୁଷ ବିକ୍ରମ ବର୍ମା
(ଙ) ସାହିତ୍ୟ, ଶିକ୍ଷା, ସାମାଜିକ ଦାୟିତ୍ୱ

**ଚତୁର୍ଥ ଅଧ୍ୟାୟ**
**ବିକ୍ରମ ବର୍ମାଙ୍କ ସାରସ୍ୱତ ବ୍ୟକ୍ତିତ୍ୱ**
(କ) ତେଲୁଗୁ :-
ନାଟକ, କାବ୍ୟ, ଅନ୍ୟାନ୍ୟ ରଚନା-
ବିକ୍ରମବର୍ମାଙ୍କ ସାରସ୍ୱତ ବ୍ୟକ୍ତିତ୍ୱ ଓଡ଼ିଆ
(ଖ) ଓଡ଼ିଆ
ନାଟ୍ୟକାର ବିକ୍ରମ- ଶ୍ରୀ ସଂଗୀତ
ରାଧାମାଧବ ନାଟକ, ବୁଦ୍ଧଚରିତ,
ଉତ୍କଳ ଛନ୍ଦମାଳା
କାବ୍ୟକାର ବିକ୍ରମ,
ଅନୁସୃଜନକାର ବିକ୍ରମ
କଥାକାର ବିକ୍ରମ
ପ୍ରାବନ୍ଧିକ ବିକ୍ରମ

**ପଞ୍ଚମ ଅଧ୍ୟାୟ**
ଓଡ଼ିଆ ଭାଷା ସାହିତ୍ୟର ସୁରକ୍ଷାରେ ବିକ୍ରମଙ୍କ ଅବଦାନ

ଶାସ୍ତ୍ରଦର୍ଶିତା ଓ ତର୍କ ନିଷ୍ଠତା ତାଙ୍କ ସାରସ୍ୱତ ପ୍ରତିଭାକୁ ସାର୍ଥକ କରିପାରିଛି। ତାଙ୍କ ସୃଷ୍ଟି ସମ୍ଭାର ଓଡ଼ିଆ ସାରସ୍ୱତ ଗନ୍ତାଘରର ଅମୂଲ୍ୟ ସଂପଦ।

ଏପରି ଜଣେ ଅସାଧାରଣ ମନୀଷୀଙ୍କ ସାହିତ୍ୟ ସମ୍ଭାର ଯେତିକି ଆଲୋଚନା ପର୍ଯ୍ୟାଲୋଚନା ହେବା କଥା ତାହା ଏ ଯାବତ୍ ହୋଇନାହିଁ। ଏହି ଅଭାବବୋଧକୁ **'ଉପାନ୍ତ ଅଞ୍ଚଳ ଭାଷା ସାହିତ୍ୟର ଜାଗ୍ରତ ପ୍ରହରୀ ବିକ୍ରମଦେବ ବର୍ମା'**ର ପରିକଳ୍ପନା।

ଦୀର୍ଘଦିନ ଧରି ଉପାନ୍ତ ଅଞ୍ଚଳ ମୋ କର୍ମଭୂମି ଥିବାରୁ ବିକ୍ରମଦେବ ବର୍ମାଙ୍କ ଜୀବନୀ ଓ ସାରସ୍ୱତ ସମ୍ଭାର ଅଧ୍ୟୟନ କରିବାର ସୁଯୋଗ ପାଇଥିଲି। ତାଙ୍କ ସଂପର୍କରେ କିଛି କାମ କରିବାର ସୁପ୍ତ ଅଭିଳାଷଟିଏ ଅଙ୍କୁରିତ ହୋଇଥିଲା। ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ଅର୍ଥ ଅନୁଦାନ ମୋର ସେ ଅଭିଳାଷକୁ ନିବନ୍ଧ ରୂପ ଦେବାରେ ମୋତେ ସମର୍ଥ କରିଛି। ଏଥିପାଇଁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗଙ୍କ ନିକଟରେ ମୁଁ ମୋର କୃତଜ୍ଞତା ଜ୍ଞାପନ କରୁଛି।

ଏହି ଅବସରରେ ମୋତେ ସହାୟତା କରିଥିବା ଅନୁଷ୍ଠାନ ଓ ବ୍ୟକ୍ତିବିଶେଷଙ୍କୁ ସାଧୁବାଦ ଜଣାଉଛି।

ନିବନ୍ଧଟି ଆଗ୍ରହୀ ଗବେଷକ ଓ ସହୃଦୟ ପାଠକଙ୍କ କିଞ୍ଚିତ୍ ଆଦୃତ ଲାଭ କଲେ ମୋ ଶ୍ରମ ସାର୍ଥକ ହେଲା ବୋଲି ଜାଣିବି।

ନିବନ୍ଧିକା

# ପ୍ରଥମ ଅଧ୍ୟାୟ

## ଜୟପୁର ରାଜ୍ୟର ଉଦ୍ଭବ ଓ ବିସ୍ତୃତି:-

ଅବିଭକ୍ତ କୋରାପୁଟ ଜିଲ୍ଲା ଅନ୍ତର୍ଗତ ଜୟପୁର ସହର ଅତୀତରେ ଏକ ସମ୍ଭ୍ରାନ୍ତ ରାଜ୍ୟର ମାନ୍ୟତା ପାଇଥିଲା। ଏ ରାଜ୍ୟର ରାଜଧାନୀ ଥିଲା ନନ୍ଦପୁର। ପ୍ରାଚୀନ କଳିଙ୍ଗ ସାମ୍ରାଜ୍ୟର ଏକ ଅଂଶ ରୂପେ ଏହା ପରିଗଣିତ ହେଉଥିଲା। ଘଞ୍ଚ ବନାନୀ, ସୁଉଚ୍ଚ ପର୍ବତମାଳା, ଖରସ୍ରୋତା ନଦନଦୀ ପରିବେଷ୍ଟିତ ଏହି ଅଞ୍ଚଳର ପ୍ରାକୃତିକ ସୁଷମା ଅତ୍ୟନ୍ତ ମନୋମୁଗ୍ଧକର। ଦୁଷ୍ପ୍ରାପ୍ୟ ଜଙ୍ଗଲଜାତ ଦ୍ରବ୍ୟ ଏ ଅଞ୍ଚଳର ଆଦିମ ଅଧିବାସୀ ମାନଙ୍କର ଜୀବିକା ନିର୍ବାହର ମୁଖ୍ୟ ସାଧନ। ଦୁର୍ଗମ ଅଞ୍ଚଳ ହୋଇଥିବାରୁ ବହୁଦିନ ପର୍ଯ୍ୟନ୍ତ ସଭ୍ୟ ସମାଜର ପ୍ରତ୍ୟକ୍ଷ ପ୍ରଭାବରୁ ଏହା ବଞ୍ଚିତ ହୋଇଥିଲା। ଆଧୁନିକ ଶିକ୍ଷା ସଭ୍ୟତା ଏମାନଙ୍କ ପାଖରେ ପହଞ୍ଚି ପାରି ନଥିଲା। ଫଳତଃ ଆର୍ଥିକ ଓ ସାମାଜିକ କ୍ଷେତ୍ରରେ ଏ ଅଞ୍ଚଳ ଯଥେଷ୍ଟ ଅନଗ୍ରସର ଥିଲା। ଏସବୁ ସତ୍ତ୍ୱେ ଓଡ଼ିଶା ଭୂଖଣ୍ଡରେ ଜୟପୁରର ଏକ ସ୍ୱତନ୍ତ୍ର ପରିଚୟ ରହିଛି। ଓଡ଼ିଶା ବ୍ୟତୀତ ପ୍ରତିବେଶୀ ରାଜ୍ୟ ଆନ୍ଧ୍ର ପର୍ଯ୍ୟନ୍ତ ଏହାର ପ୍ରସିଦ୍ଧି ପରିବ୍ୟାପ୍ତ।

## କିମ୍ବଦନ୍ତୀରେ ଜୟପୁର:

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ହେବା ପୂର୍ବରୁ ଜୟପୁର ବିଶାଖାପାଟଣା ଏଜେନ୍ସିରେ ଅନ୍ତର୍ଭୁକ୍ତ ଥିଲା। କିନ୍ତୁ ଜୟପୁର ସହରର ଐତିହ୍ୟ ବହୁ ପ୍ରାଚୀନ। ଏହା କଳିଙ୍ଗର ଗୋଟାଏ ଶକ୍ତିଶାଳୀ ସାମନ୍ତ ରାଜ୍ୟ ଥିଲା। କିମ୍ବଦନ୍ତୀ କହେ ଏହି ରାଜ୍ୟ ପୁରାଣ ପ୍ରସିଦ୍ଧ ନନ୍ଦରାଜାଙ୍କର ନିଷାଦ ରାଜ୍ୟ ଥିଲା। (୧) (ପୃ.୫୪ ଜୟପୁର, କବିଶେଖର ଚିନ୍ତାମଣି ମହାନ୍ତି) ନନ୍ଦବଂଶର ରାଜା ଭବଦତ୍ତ ଏହି ବଂଶରେ ରାଜତ୍ୱ କରୁଥିଲେ। କନ୍ଧ, ଶବର, ପରଜା, ଭତ୍ରା, ଗଣ୍ଡ, ଗାଦବା ଆଦି ବହୁ ଆଦିମ ଅଧିବାସୀ ଏ ଅଞ୍ଚଳର ବାସିନ୍ଦା ଥିଲେ। ଜୟପୁରର ପୂର୍ବତନ ରାଜଧାନୀ ନନ୍ଦପୁର ଥିଲା। ଏଠାରେ ବହୁ ଜୈନ କୀର୍ତ୍ତି ରହିଛି। ଶିଳାବଂଶୀୟ ରାଜାମାନଙ୍କର ରାଜତ୍ୱର କେତେକ ଭଗ୍ନାବଶେଷ ଅଦ୍ୟାବଧି ସେଠାରେ ରହିଛି। ନନ୍ଦପୁରରେ ବତ୍ରିଶ ପାହାଚ ବିଶିଷ୍ଟ ବତ୍ରିଶ ସିଂହାସନ ରହିଛି। ଜୟପୁର ରାଜ୍ୟର ଶାସନାଧୀନ ଉମରକୋଟ ଅଞ୍ଚଳରେ ପୋଡ଼ାଗଡ଼ ନାମକ ଏକ ସ୍ଥାନ ରହିଛି। ବହୁ ପ୍ରାଚୀନ ରାଜବଂଶର ନିଦର୍ଶନ ଏଠାରେ ଦେଖିବାକୁ ମିଳେ। ଏହି ସ୍ଥାନ ବିକ୍ରମାଦିତ୍ୟଙ୍କର ସଭା କବି କାଳିଦାସଙ୍କର ଜନ୍ମସ୍ଥାନ ବୋଲି ଲୋକ ବିଶ୍ୱାସ ରହିଛି। ସଂପ୍ରତି ଓଡ଼ିଶା ସରକାର ଏ ସଂପର୍କରେ ଅଧିକରୁ ଅଧିକ ତଥ୍ୟ ସଂଗ୍ରହ କରିବା ପାଇଁ ଗୋଟାଏ ପ୍ରକଳ୍ପ ହାତକୁ ନେଇଛନ୍ତି। ପ୍ରାଥମିକ ପର୍ଯ୍ୟାୟରେ ଗବେଷକମାନେ କିଛି ତଥ୍ୟ ସଂଗ୍ରହ କରିସାରିଲେଣି। ରାମଗିରି ଜୟପୁର ରାଜ୍ୟର ଅନ୍ୟ ଏକ ଅଞ୍ଚଳ। କାଳିଦାସକୃତ ମେଘଦୂତ

ବର୍ଣ୍ଣିତ ରାମଗିରି ଏହି ରାମଗିରି ବୋଲି କେତେକ ବିଦ୍ୱାନ ମତ ପୋଷଣ କରନ୍ତି। ମେଘଦୂତ ବର୍ଣ୍ଣିତ ପ୍ରାକୃତିକ ଦୃଶ୍ୟରାଜି ସହ ଏହି ଅଞ୍ଚଳର ପ୍ରକୃତି ଅନେକାଂଶରେ ମେଳ ଖାଇଥାଏ। "ରାମଚର୍ଯ୍ୟା ଶ୍ରମେଷୁ ଓ ସାନୁମାନାମ୍ରକୁଟଃ" ସେହିପରି କାଳିଦାସଙ୍କ ଉଚ୍ଚରିତ ଆମ୍ରକୁଟଃକୁ ପ୍ରାଚୀନ ଜୟପୁର ରାଜ୍ୟର ଉମରକୋଟ ବୋଲି କେହି କେହି ବିଶ୍ୱାସ କରନ୍ତି।

ଜୟପୁର ରାଜାଙ୍କର ଇଷ୍ଟଦେବୀ କନକଦୁର୍ଗା। ରାଜନଅର ମଧ୍ୟରେ ତାଙ୍କର ମନ୍ଦିର ରହିଛି। ଏ ଦେବୀଙ୍କ ସଂପର୍କରେ ଜନଶ୍ରୁତି କହେ ରାଜା ପୁରୁଷୋତ୍ତମ ଦେବ କାଞ୍ଚି ଅଭିଯାନ ସାରି ପୁରୀକୁ ପ୍ରତ୍ୟାବର୍ତ୍ତନ କରୁଥିବାବେଳେ କାଞ୍ଚିରୁ ଆଣିଥିବା ଏହି ମୂର୍ତ୍ତିକୁ ସାଙ୍ଗରେ ଧରି ଯାଉଥିଲେ। ସେ ଜୟପୁର ରାଜ୍ୟ ଅତିକ୍ରମ କରିଯାଉଥିବାବେଳେ ତତ୍‌କାଳୀନ ରାଜା ଏହାକୁ ଛଡ଼େଇ ଆଣିଥିଲେ ଓ ନିଜ ଇଷ୍ଟଦେବୀ ରୂପରେ ପୂଜା କରୁଥିଲେ।

ଜୟପୁର ସହରର ଉପକଣ୍ଠରେ ନାକୋଇ ପର୍ବତ ରହିଛି। କୁହାଯାଏ ପୂର୍ବେ ରାଜଦଣ୍ଡ ବିଧି ଅନୁସାରେ ଜେଲ ଜୋରିମାନା ବଦଳରେ ଅଭିଯୁକ୍ତଙ୍କୁ ଏହି ପାହାଡ଼ ଉପରକୁ ଆଣି ସେମାନଙ୍କ ନାକ କାନ କାଟି ଦିଆଯାଉଥିଲା। ସେହି ରାଜଦଣ୍ଡ ଅନୁସାରେ ଏ ପାହାଡ଼ର ନାମକରଣ ନାକୋଇ ପାହାଡ଼ ହୋଇଅଛି।

## ଇତିହାସରେ ଜୟପୁର:

ଇତିହାସ ଓ କିମ୍ବଦନ୍ତୀ ମଧ୍ୟରେ ପାର୍ଥକ୍ୟ ଏତିକି ଯେ କିମ୍ବଦନ୍ତୀରେ ପ୍ରାମାଣିକତା ନଥାଏ। ଜନଶ୍ରୁତିରେ ଯାହା ଥାଏ ନିର୍ବିବାଦରେ ତାହା ଗ୍ରହଣ କରାଯାଏ। ଏହା କେବଳ ବିଶ୍ୱାସର କଥା। ସତ୍ୟାସତ୍ୟ ଖୋଜି ବସିଲେ ଅନେକ ସମୟରେ ନିରାଶ ହେବାପାଇଁ ପଡ଼ିଥାଏ। ଏଥିରେ କିମ୍ଭୂତ କିମାକାର ଉପାଖ୍ୟାନ ସବୁ ମଧ୍ୟ ଶୁଣିବାକୁ ମିଳିଥାଏ। ଅବଶ୍ୟ ଏହାରି ମୂଳରେ କୋଉଠି ନା କୋଉଠି ସତ୍ୟଟିଏ ସୂକ୍ଷ୍ମ ରୂପରେ ଆତ୍ମଗୋପନ କରିଥାଏ। ସେହି ସତ୍ୟର ସାଙ୍କେତିକ ରୂପକୁ ଅବବୋଧ କରିବା ବୌଦ୍ଧିକତା ସାପେକ୍ଷ। କିନ୍ତୁ ଇତିହାସ ତଥ୍ୟଭିତ୍ତିକ ପ୍ରାମାଣିକତା ଉପରେ ଆଧାରିତ। ତଥ୍ୟ ପ୍ରମାଣ ନଥିଲେ ତାହା ଇତିହାସ ମାନ୍ୟତା ପାଏ ନାହିଁ। ଏହି ପରିପ୍ରେକ୍ଷୀରେ ପ୍ରାଚୀନ ଜୟପୁର ରାଜ୍ୟ ସଂପର୍କରେ କିଞ୍ଚିତ୍ ବିବରଣୀ ଉପସ୍ଥାପନା କରାଗଲା।

ପ୍ରାଚୀନ ଇତିହାସ ଓ ପୁରାଣରେ ଜୟପୁର ଆଟବିକ ରାଜ୍ୟ ଭାବରେ ପ୍ରସିଦ୍ଧି ଲାଭ କରିଥିଲା। ଏହାକୁ ପ୍ରାଚୀନ କାଳରେ ମହାକାନ୍ତାର ରୂପେ ମଧ୍ୟ ନାମିତ କରାହୋଇଛି। ଅଶୋକଙ୍କ ଜଉଗଡ଼ ଶିଳାଲେଖରେ କଳିଙ୍ଗ କାନନ ବୋଲି ଗୋଟିଏ ଅଞ୍ଚଳକୁ ନିର୍ଦ୍ଦେଶିତ ହୋଇଛି। ଏହି କଳିଙ୍ଗକାନନ କୋରାପୁଟ, ଜୟପୁର, କାଶୀପୁର,

ପାରଳାଖେମୁଣ୍ଡୀ, ଗଞ୍ଜାମ, କନ୍ଧମାଳ ଓ କଳାହାଣ୍ଡି ଅଞ୍ଚଳର ବଣପାର୍ବତ୍ୟ ଅଞ୍ଚଳ ପାଇଁ ହିଁ ଉଦ୍ଦିଷ୍ଟ। ଏକ ସମୃଦ୍ଧ ଐତିହ୍ୟ ବହନ କରିଥିବା ଜୟପୁର ସହରର ପୁରାତନ ରାଜଧାନୀ ଥିଲା ନନ୍ଦପୁର। ୧୬୩୭ ଖ୍ରୀଷ୍ଟାବ୍ଦରୁ ୧୬୬୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଜୟପୁର ରାଜ୍ୟରେ ରାଜତ୍ୱ କରୁଥିବା ବୀର ବିକ୍ରମଦେବ ନନ୍ଦପୁରରୁ ରାଜଧାନୀ ବର୍ତ୍ତମାନର ଜୟପୁର ସହରକୁ ଉଠାଇ ଆଣିଥିଲେ। କ୍ରମାଗତ ଛଅ ପୁରୁଷ ଧରି ରାଜବଂଶରେ ଏକମାତ୍ର ସନ୍ତାନ ଜାତ ହେବାରୁ ରାଜା ବୀର ବିକ୍ରମ ଏଇଭଳି ନିଷ୍ପତ୍ତିଟିଏ ନେଇଥିଲେ। "ହାଇଦ୍ରାବାଦର ନବାବ ଜୟପୁରର ଜଣେ ରାଜାଙ୍କୁ 'ଝାଡ଼ଖଣ୍ଡ ବାଦସା' ଉପାଧିରେ ଭୂଷିତ କରିଥିଲେ। ସେହି ହେତୁରୁ ଜୟପୁରକୁ ଝାଡ଼ଖଣ୍ଡ ବାଦସାହି ମୂଲକ ବୋଲି କୁହାଯାଏ"। (୨)

ମହାଭାରତରେ ପଣ୍ଡୁ ରାଜାଙ୍କୁ ଓଡ୍ରରାଜା ହାତୀଦାନ୍ତ ଉପହାର ଦେବାର ଯେଉଁ ତଥ୍ୟ ରହିଛି ତାହା ଏହି ଜୟପୁର ରାଜ୍ୟର ରାଜା ବୋଲି ଶ୍ରୀଯୁକ୍ତ ଚିନ୍ତାମଣି ମହାନ୍ତି ତାଙ୍କ ଜୟପୁର ପୁସ୍ତକରେ ଉଲ୍ଲେଖ କରିଛନ୍ତି। ଚତୁର୍ଥ ଶତାବ୍ଦୀର ଏକ ତାମ୍ରଲିପିରୁ ଅନୁସନ୍ଧାନ କରାଯାଏ ନନ୍ଦ ବଂଶର ରାଜା ଭବଦତ୍ତ ପିତା ହରାଇଥିବା ରାଜ୍ୟକୁ ପୁନରୁଦ୍ଧାର କରି ଜୟପୁର ରାଜ୍ୟରେ ରାଜତ୍ୱ କରୁଥିଲେ।

ଜୟପୁର ରାଜ୍ୟ କଳିଙ୍ଗ ସାମ୍ରାଜ୍ୟର ଶାସନାଧୀନ ଥିଲା। ଗଙ୍ଗବଂଶୀ ଓ ସୂର୍ଯ୍ୟବଂଶୀ ରାଜାମାନଙ୍କର ଏହା ଏକ ସମୃଦ୍ଧ କରଦ ରାଜ୍ୟ ରୂପେ ମାନ୍ୟତା ପାଇଥିଲା।

ତ୍ରୟୋଦଶ ଶତାବ୍ଦୀ ବେଳକୁ ମତ୍ସ୍ୟ ବଂଶର ରାଜାମାନଙ୍କ ଦ୍ୱାରା ଏହି ରାଜ୍ୟ ଅଧିକୃତ ହୋଇଥିଲା। ମହାଭାରତରେ ମତ୍ସ୍ୟ ଦେଶକୁ ନିଷାଦ (ଶବର) ରାଜ୍ୟ ଓ ରାମାୟଣରେ ଦଣ୍ଡକାରଣ୍ୟ ବୋଲି ଅବିହିତ କରାଯାଇଛି। ୧୨୬୯ ଖ୍ରୀଷ୍ଟାବ୍ଦରେ 'ଦିବିଡ଼ି' (ମତ୍ସ୍ୟବଂଶୀୟ ରାଜା ଅର୍ଜୁନଦେବଙ୍କ ପ୍ରଦତ୍ତ) ତାମ୍ର ଶାସନରେ ମତ୍ସ୍ୟ ଦେଶର ଉତ୍ପତ୍ତି ସଂପର୍କରେ ସୁନ୍ଦର କାହାଣୀଟିଏ ରହିଛି। ପୁରାକାଳରେ ନାରଙ୍ଗ ନାମକ ଜଣେ ଋଷିଙ୍କ ତପସ୍ୟାରେ ଭୟଭୀତ ହୋଇ ଇନ୍ଦ୍ର ଜଣେ ଅପ୍ସରାଙ୍କୁ ତାଙ୍କ ତପଃଭଗ୍ନ କରାଇବା ପାଇଁ ନିର୍ଦ୍ଦେଶ ଦେଇଥିଲେ। ଏହି ଅପ୍ସରାଙ୍କ କାର୍ଯ୍ୟକଳାପରେ ଅତିଷ୍ଠ ହୋଇ ଋଷି ତାଙ୍କୁ ମାଛ ହୋଇଯିବା ପାଇଁ ଅଭିଶାପ ଦେଇଥିଲେ। ସେହି ମାଛ ଗର୍ଭରୁ ଋଷିଙ୍କ ଔରସରୁ ଜନ୍ମ ହୋଇଥିବା ପୁତ୍ରକୁ ଅପ୍ସରୀ ଋଷିଙ୍କୁ ପ୍ରଦାନ କରି ଚାଲି ଯାଇଥିଲେ। ସେହି ସନ୍ତାନ ମତ୍ସ୍ୟଦେଶର ପ୍ରତିଷ୍ଠାତା ଓ ଅପ୍ସରୀ ଯେଉଁ ନଦୀରେ ମାଛ ହୋଇଯାଇଥିଲା ସେହି ନଦୀକୁ ମତ୍ସ୍ୟକୁଣ୍ଡ ବା ମାଛକୁଣ୍ଡ କୁହାଗଲା। ଏହି ମାଛକୁଣ୍ଡ ନଦୀ ଜୟପୁର ରାଜ୍ୟର ସୀମାରେ ପ୍ରବାହିତ। ବର୍ତ୍ତମାନ ଏହି ନଦୀରେ ଏକ ଜଳ ବିଦ୍ୟୁତ ପ୍ରକଳ୍ପ ନିର୍ମାଣ କରାଯାଇଛି, ଯାହା ଓଡ଼ିଶାର ଶ୍ରୀବୃଦ୍ଧି ସାଧନରେ ସହାୟକ ହେଉଛି।

ଚତୁର୍ଦ୍ଦଶ ଶତାବ୍ଦୀ ବେଳକୁ ମତ୍ସ୍ୟ ଦେଶରେ ଶିଳାବଂଶୀ ରାଜାମାନେ ରାଜତ୍ୱ କରିଥିଲେ। ଏମାନେ ତ୍ରିକଳିଙ୍ଗରୁ ଆସିଥିଲେ ଓ ସେମାନଙ୍କ ପୂର୍ବତନ ରାଜଧାନୀ

ନନ୍ଦିବର୍ଦ୍ଧନର ସ୍ମୃତି ଉଦ୍ଦେଶ୍ୟରେ ରାଜଧାନୀର ନାମ ନନ୍ଦପୁର ରଖିଥିଲେ। ନିଜର ଯଶକୀର୍ତ୍ତିର ପ୍ରତିଷ୍ଠା ଉଦ୍ଦେଶ୍ୟରେ ବିକ୍ରମାଦିତ୍ୟଙ୍କ ବତ୍ରିଶ ସିଂହାସନ ଅନୁକରଣରେ ବତ୍ରିଶଟି ପାହାଚ ଥିବା ପ୍ରସ୍ତର ସିଂହାସନ ନିର୍ମାଣ କରିଥିଲେ। ଅଦ୍ୟାବଧି ନନ୍ଦପୁରରେ ଏହା ଏକ ଦର୍ଶନୀୟ ସ୍ଥାନ ହୋଇ ରହିଛି। ଏହି ବତ୍ରିଶ ସିଂହାସନରେ ରାଜାମାନଙ୍କର ଅଭିଷେକ ହେଉଥିଲା। ଏହି ସିଂହାସନ ତଳେ ଶାଳଗ୍ରାମ ପ୍ରତିଷ୍ଠିତ ହୋଇଥିବାରୁ ରାଜର୍ଷି ବିକ୍ରମଦେବ ବର୍ମାଙ୍କ ପିତାମହ ଏହି ପ୍ରଥା ବନ୍ଦ କରି ଦେଇଥିଲେ।

୧୬୩୭ ଖ୍ରୀଷ୍ଟାବ୍ଦରୁ ୧୬୬୯ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରୁଥିବା ବୀର ବିକ୍ରମଦେବ ନନ୍ଦପୁରରୁ ରାଜଧାନୀ ଜୟପୁର ସହରକୁ ଉଠାଇ ଆଣିଥିଲେ। କ୍ରମାଗତ ଛଅ ପୁରୁଷ ଧରି ରାଜବଂଶରେ ଏକମାତ୍ର ସନ୍ତାନ ଜାତ ହେବାରୁ ବୀର ବିକ୍ରମ ଦେବ ଏଇଭଳି ନିଷ୍ପତ୍ତିଟିଏ ନେଇଥିଲେ। ଏହାଛଡ଼ା ଦାକ୍ଷିଣାତ୍ୟ ରାଜାମାନଙ୍କର କ୍ରମାଗତ ଆକ୍ରମଣ ମଧ୍ୟ ରାଜଧାନୀକୁ ଜୟପୁର ଉଠାଇଆଣିବା ଅନ୍ୟ ଏକ କାରଣ ହୋଇପାରେ ବୋଲି ଗବେଷକମାନେ ମତ ଦିଅନ୍ତି। ହାଇଦ୍ରାବାଦର ନବାବ ଏ ବଂଶର ରାଜା ୨ୟ ବିଶ୍ୱମ୍ଭର ଦେବଙ୍କୁ ଝାଡ଼ଖଣ୍ଡ ବାଦସା ଉପାଧିରେ ଭୂଷିତ କରିଥିଲେ। ସେହି ହେତୁ ଜୟପୁରକୁ ଝାଡ଼ଖଣ୍ଡ ବାଦସାହୀ ବୋଲି ମଧ୍ୟ କୁହାଯାଉଥିଲା।

ରାଜା ୨ୟ ବିକ୍ରମ ଦେବଙ୍କ ସମୟରେ ଜୟପୁରର ବିଶିଷ୍ଟ ଶୈବପୀଠ ଗୁପ୍ତେଶ୍ୱର ଆବିଷ୍କୃତ ହୋଇଥିଲା। ଓଡ଼ିଶାର ସ୍ୱାଧୀନତା ଲୋପ ପାଇବା ଫଳରେ ଅନ୍ୟାନ୍ୟ ସାମନ୍ତ ରାଜ୍ୟ ଭଳି ଜୟପୁର ମଧ୍ୟ ଓଡ଼ିଶାରୁ ବିଚ୍ଛିନ୍ନ ହୋଇ ପଡ଼ିଥିଲା ଓ ଗୋଲ୍‌କୁଣ୍ଡା ରାଜ୍ୟର ଅଧୀନରେ ରହିଲା। ଅତୀତରେ ବିଜୟନଗର, ବବ୍‌ଲି, ସାଲୁର୍ ଆଦି ରାଜ୍ୟ ଜୟପୁର ରାଜାଙ୍କର କରଦ ରାଜା ଥିଲେ ବୋଲି ପ୍ରମାଣ ରହିଛି। ଓଡ଼ିଶା ଇଂରେଜମାନଙ୍କ ଶାସନାଧୀନ ହେବାପରେ ବହୁଦିନ ଧରି ଜୟପୁର ବିଶାଖାପାଟଣା ଏଜେନ୍ସି ଅନ୍ତର୍ଭୁକ୍ତ ଥିଲା। ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ପରେ ଜୟପୁର ପୁଣି ତାର ପୂର୍ବ ସ୍ଥିତାବସ୍ଥା ଫେରିପାଇଲା ଓ ଓଡ଼ିଶାର ଏକ ସମ୍ଭ୍ରାନ୍ତ ସହରର ମାନ୍ୟତା ପାଇଲା।

ଜୟପୁର ସହର ବହୁ ପ୍ରାଚୀନ କିନ୍ତୁ ଏହାର ନାମକରଣ ଅପେକ୍ଷାକୃତ ନୂତନ। ଏକଦା ଏ ଅଞ୍ଚଳରେ ବହୁ ଜୈନ ସନ୍ନ୍ୟାସୀ ବସବାସ କରୁଥିବାରୁ ଜୈନ ନଗର ଭାବରେ ଏହା ଖ୍ୟାତିଲାଭ କରିଥିଲା। ପରେ ଏହା ଜୟନଗର ଓ ଜୟନଗରରୁ ଜୟପୁର ନାମ ଧାରଣ କରି ରାଜଧାନୀ ଘୋଷିତ ହେଲା।

ଶିଳା ବଂଶର ଶେଷରାଜା ପ୍ରତାପଗଙ୍ଗ ରାଜୁ ତାଙ୍କର କନ୍ୟା ଲୀଳାବତୀଙ୍କୁ ବିନାୟକ ଦେବଙ୍କୁ ବିବାହ ଦେଇ ନନ୍ଦପୁର ରାଜସିଂହାସନରେ ଅଭିଷିକ୍ତ କରାଇଥିଲେ। ସେହିଦିନଠାରୁ ନନ୍ଦପୁରରେ ସୂର୍ଯ୍ୟ ବଂଶର ପ୍ରତିଷ୍ଠା ହୋଇଥିଲା। ବିନାୟକଦେବ ଥିଲେ କାଶ୍ମୀରର ରାଜା କୁମ୍ଭରାଜ ଦେବଙ୍କ ପୁତ୍ର। ପାରିବାରିକ କଳହ ହେତୁ ସେ କାଶ୍ମୀର

ପରିତ୍ୟାଗ କରି ଦାକ୍ଷିଣାତ୍ୟକୁ ଆସିଥିଲେ ଓ ଭାଗ୍ୟକ୍ରମେ ନନ୍ଦପୁର ରାଜ୍ୟରେ ସୂର୍ଯ୍ୟବଂଶର ପ୍ରତିଷ୍ଠାତା ହୋଇଥିଲେ। ତାଙ୍କ ସମୟରେ ନନ୍ଦପୁର ରାଜ୍ୟର ସୀମା ପୂର୍ବରେ ସିକାକୋଲନାଗରାଖାନା, ଦକ୍ଷିଣରେ କାମ୍ବାମେଣ୍ଟୁ, ସର୍ବସିଦ୍ଧି ରାୟବାର, ପଶ୍ଚିମରେ ବସ୍ତର ରାଜ୍ୟର ଭାସ୍କେଲ ନଦୀ, ଉତ୍ତରରେ କଳାହାଣ୍ଡି, ବଡ଼ଖେମୁଣ୍ଡିର ଫଟାଚାଛଡ଼ା ଏବଂ ପାରଳାଖେମୁଣ୍ଡି ନିକଟସ୍ଥ ଗୁମାଗଡ଼ ପର୍ଯ୍ୟନ୍ତ ବିସ୍ତୃତ ଥିଲା। ସେ ଜଣେ ଧାର୍ମିକ, ବିଦ୍ୱାନ ରାଜନୀତି ବିଶାରଦ ସୁଶାସକ ଥିଲେ। ତାଙ୍କ ପରେ ଜଣକ ପରେ ଜଣେ ୨୪ ଜଣ ରାଜା ନନ୍ଦପୁର ରାଜସିଂହାସନରେ ଅଳଙ୍କୃତ ହୋଇଥିଲେ।

ରାଜର୍ଷି ବିକ୍ରମଦେବ ବର୍ମା ଏହି ବଂଶର ୨୪ ତମ ତଥା ଶେଷ ରାଜା। ବିକ୍ରମ ଦେବ ବର୍ମାଙ୍କର ପୁତ୍ର ସନ୍ତାନ ନଥିଲେ। ତାଙ୍କର ଏକମାତ୍ର କନ୍ୟା ମଧ ଦୀର୍ଘାୟୁ ନଥିଲା। ବିକ୍ରମଦେବ ବର୍ମାଙ୍କ ପରେ ଜୟପୁରରେ ସୂର୍ଯ୍ୟ ବଂଶର ରାଜବଂଶ ଲୋପ ପାଇଗଲା। ତାଙ୍କ କନ୍ୟା ମଣିଦେବୀ ଓ ଜାମାତା ସମ୍ବଲପୁର ରାଜ୍ୟ ଅନ୍ତର୍ଗତ ଇଚ୍ଛାଗଡ଼ର ରାଜକୁମାର ବିଦ୍ୟାଧର ସିଂ ଦେବ ପରବର୍ତ୍ତୀ ଉତ୍ତରାଧିକାରୀ ହେଲେ। ସେମାନଙ୍କ ଦୁଇ ପୁତ୍ର ଓ ଦୁଇ କନ୍ୟା ଜାତ ହୋଇଥିଲା।

ଏହା ବିକ୍ରମଦେବ ବର୍ମାଙ୍କ ବଂଶାବଳି-

(୧) ବିନାୟକ ଦେବ-୧୪୪୩-୧୪୭୬
(୨) ବିଜୟ ଚନ୍ଦ୍ରଦେବ-୧୪୭୬-୧୫୧୦
(୩) ଭୈରବ ଦେବ-୧୫୧୦-୧୫୨୭
(୪) ବିଶ୍ୱନାଥ ଦେବ-୧୫୨୭-୧୫୭୧
(୫) ବଳରାମ ଦେବ-୧୫୭୧-୧୫୯୭
(୬) ଯଶୋବନ୍ତ ଦେବ-୧୫୯୭-୧୬୩୬
(୭) ବୀର ବିକ୍ରମ ଦେବ-୧୬୩୭-୧୬୬୯
(୮) କୃଷ୍ଣଚନ୍ଦ୍ର ଦେବ-୧୬୬୯-୧୬୭୨
(୯) ବିଶ୍ୱମ୍ବର ଦେବ (୧ମ)-୧୬୭୨-୧୬୭୬
(୧୦) ମଲ୍ଲଜୀ ମର୍ଦ୍ଦନ କୃଷ୍ଣଦେବ-୧୬୭୬-୧୬୮୧
(୧୧) ହରିଦେବ-୧୬୮୧-୧୬୮୪
(୧୨) ବଳରାମ ଦେବ-୨ୟ-୧୬୮୪-୧୬୮୬
(୧୩) ରଘୁନାଥ କୃଷ୍ଣଦେବ-୧୬୮୬-୧୭୦୮
(୧୪) ରାମଚନ୍ଦ୍ରଦେବ ୧ମ-୧୭୦୮-୧୭୧୧
(୧୫) ବଳରାମ ଦେବ ୩ୟ-୧୭୧୧-୧୭୧୩
(୧୬) ବିଶ୍ୱମ୍ବର ଦେବ ୨ୟ-୧୭୧୩-୧୭୫୨

(୧୭) ଲାଲକୃଷ୍ଣ ଦେବ-୧୭୫୨-୧୭୮୧

(୧୮) ବିକ୍ରମଦେବ ୧ମ-୧୭୫୮-୧୭୮୧

(୧୯) ରାମଚନ୍ଦ୍ର ଦେବ ୨ୟ-୧୭୮୧-୧୮୨୫

(୨୦) ବିକ୍ରମଦେବ ୨ୟ-୧୮୨୫-୧୮୬୦

(୨୧) ରାମଚନ୍ଦ୍ରଦେବ ୩ୟ-୧୮୬୦-୧୮୮୯

(୨୨) କୋର୍ଟ ଅଫ୍ ୱାର୍ଡ୍‌ସ୍-୧୮୮୯-୧୮୯୫

(୨୩) ବିକ୍ରମଦେବ ୩ୟ-୧୮୮୫-୧୯୨୦

(୨୪) ରାମଚନ୍ଦ୍ର ଦେବ ୪ର୍ଥ-୧୯୨୦-୧୯୩୧

(୨୫) ରାଜର୍ଷି ବିକ୍ରମଦେବବର୍ମା-୧୯୩୧-

## ଭୌଗୋଳିକ ସ୍ଥିତି:

ବର୍ତ୍ତମାନର ଅବିଭକ୍ତ କୋରାପୁଟ ଜିଲ୍ଲା ତତ୍‌କାଳୀନ ଜୟପୁର ରାଜ୍ୟ ନାମରେ ପ୍ରସିଦ୍ଧି ଲାଭ କରିଥିଲା । ଏହାର ପୂର୍ବରେ ପୂର୍ବଘାଟ ପର୍ବତମାଳା ଓ ଦକ୍ଷିଣରେ ମାଲକାନାଗିରି ଓ ଆନ୍ଧ୍ର ସୀମା ପଶ୍ଚିମରେ କୋଲାବ ନଦୀ ଓ ବସ୍ତର ରାଜ୍ୟ ଏବଂ ଉତ୍ତରରେ ଇନ୍ଦ୍ରାବତୀ ନଦୀ ପ୍ରବାହିତ ହେଉଛି । ବଂଶଧାରା, ନାଗାବଳୀ, ଇନ୍ଦ୍ରାବତୀ ଓ କୋଲାବ ନଦୀ ସମୂହ ତତ୍‌କାଳୀନ ଜୟପୁର ରାଜ୍ୟକୁ ସମୃଦ୍ଧ କରିଥିଲା ।

ଓଡ଼ିଶାର ଉଚ୍ଚତମ ପର୍ବତ ଶୃଙ୍ଗ ଦେଓମାଳି ଏହିଠାରେ ଅବସ୍ଥିତ । କୋଲାବ ନଦୀ କୂଳରେ ପ୍ରସିଦ୍ଧ ଗୁପ୍ତେଶ୍ୱର ଶୈବପୀଠ ଦେଶର କେତେକ ପ୍ରମୁଖ ଶୈବପୀଠ ମାନଙ୍କ ମଧ୍ୟରେ ଅନ୍ୟତମ ।

ତତ୍‌କାଳୀନ ଜୟପୁର ରାଜ୍ୟ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ ହୋଇଥିଲା । ଉଚ୍ଚ ବିଭାଗ ଥିଲା ଜୟପୁର ଓ ନିମ୍ନ ବିଭାଗ ଥିଲା ଗୁଣୁପୁର । ଜୟପୁର କୋରାପୁଟ ନନ୍ଦପୁର ରାମଗିରି ମାଲ୍‌କାନାଗିରି, କୋଟପାଡ଼ ଅମରକୋଟ ଭୈରବ ସିଂପୁର ଆଦି ଜୟପୁର ବିଭାଗରେ ଅନ୍ତର୍ଗତ ଥିବାବେଳେ ଗୁଣୁପୁର ବିଭାଗରେ ଥିଲା ଗୁଣୁପୁର, ଗୁଡ଼ାରୀ, ରାୟଗଡ଼ା, କଲ୍ୟାଣ ସିଂପୁର ଓ ନାରାୟଣ ପାଟଣା ଆଦି ଅଞ୍ଚଳ ।

ତତ୍‌କାଳୀନ ଜୟପୁର ରାଜ୍ୟର ସ୍ଥାୟୀ ବାସିନ୍ଦା ଥିଲେ ଆଦିମ ଅଧିବାସୀ । କନ୍ଧ, ପରଜା, ଗଣ୍ଡ, ଉଡ୍ରା, ଗଦବା, ଭୂମିଆ, ବଣ୍ଡା, ଡିଡ଼ାୟୀ, ଲୋଧା, ସଉରା, କୁଇ କୋଟିଆ କୋୟା ଆଦି ପ୍ରଧାନ । ସେମାନଙ୍କ ଭିତରେ ଅଳ୍ପ କେତେ ସଂପ୍ରଦାୟର ସ୍ୱତନ୍ତ୍ର ଭାଷା ଥିବାବେଳେ ଅନ୍ୟମାନଙ୍କ ଯେଉଁ ଭାଷାରେ ଭାବର ଆଦାନ ପ୍ରଦାନ ହେଉଥିଲା, ତାହାକୁ ଦେଶୀୟା ଭାଷା କୁହାଯାଉଥିଲା । ଏହି ଲୋକମାନଙ୍କୁ ଦେଶୀୟା ଲୋକ ବୋଲି କୁହାଯାଉଥିଲା । ଅଦ୍ୟାବଧି ସେହି ସଂପ୍ରଦାୟ ଏହି ନାମରେ ନାମିତ । ବାହାରୁ ଆସିଥିବା

ଲୋକମାନଙ୍କୁ ଏମାନେ ଗଡ଼ିଆ ଲୋକ (ଗଡ଼ରୁ ଆସିଥିବା ହେତୁ) ବୋଲି କହନ୍ତି। ଏମାନଙ୍କର ଭାଷା ଯେପରି ସ୍ୱତନ୍ତ୍ର ସଂସ୍କୃତି ମଧ୍ୟ ଗଡ଼ିଆ ଲୋକଙ୍କ ଠାରୁ ସ୍ୱତନ୍ତ୍ର ଥିଲା। ଏମାନଙ୍କ ପୂଜାପାର୍ବଣ, ବିବାହ ପଦ୍ଧତି, ଜନ୍ମ ଓ ମୃତ୍ୟୁକାଳୀନ ରୀତିନୀତି, ଦେବଦେବୀ ପୂଜା ଲୋକ ବିଶ୍ୱାସ ଆଦିରେ ସଭ୍ୟ ସମାଜଠାରୁ ନିଆରାପଣ ବାରି ହୋଇପଡ଼େ। ଜଙ୍ଗଲଜାତ ଦ୍ରବ୍ୟ ଓ ପାରମ୍ପରିକ ପଦ୍ଧତିରେ କୃଷି ଉତ୍ପାଦିତ ଦ୍ରବ୍ୟ ଏମାନଙ୍କ ବଞ୍ଚିବାର ମୁଖ୍ୟ ମାଧ୍ୟମ।

## ସାମାଜିକ ସ୍ଥିତି :

ତତ୍‌କାଳୀନ ଜୟପୁର ରାଜ୍ୟର ସାମାଜିକ ସ୍ଥିତି ସ୍ୱଚ୍ଛଳ ନଥିଲା। ଶିକ୍ଷା ଓ ସଭ୍ୟତାଠାରୁ ବହୁ ଦୂରରେ ରହୁଥିବା ଏ ଅଞ୍ଚଳର ସ୍ଥାନୀୟ ଅଧିବାସୀ ଜୀବୀକା ଅର୍ଜନ ପାଇଁ କେବଳ ଜଙ୍ଗଲ ଉପରେ ନିର୍ଭର କରୁଥିଲେ। ବଞ୍ଚିବାର ମାନ ନିମ୍ନ ଧରଣର ଥିଲା। ବଣ ଜଙ୍ଗଲର ଦୁର୍ଗମ ଅଞ୍ଚଳରେ ରହିବାପାଇଁ ଏମାନେ ପସନ୍ଦ କରୁଥିବାରୁ ଆଧୁନିକ ଜୀବନ ଧାରଣ ପଦ୍ଧତି ସହ ସାମିଲ ହୋଇପାରୁ ନଥିଲେ। ସ୍ଥାନୀୟ ବାସିନ୍ଦାଙ୍କର ଆଦିମ ଜୀବନ ଧାରା, ସରଳତା, ନିରୀହତା, ଅଜ୍ଞତାରେ ପରିପୂର୍ଣ୍ଣ ହେତୁ ଉଚ୍ଚବର୍ଗର ଲୋକଙ୍କ ଦ୍ୱାରା ସେମାନେ ଶୋଷିତ ଓ ଲୁଣ୍ଠିତ ହେଉଥିଲେ। ଏହାଛଡ଼ା ନିଶାଦ୍ରବ୍ୟ ପ୍ରତି ଅତିଶୟ ଆସକ୍ତି ସେମାନଙ୍କ ଜୀବନଧାରଣ ପଦ୍ଧତିକୁ ସଦାସର୍ବଦା ଶୋଚନୀୟ କରି ରଖୁଥିଲା। ଫଳତଃ ରାଜ୍ୟର ସାମୂହିକ ଅର୍ଥନୈତିକ ବିକାଶରେ ସେମାନେ ସାମିଲ ହୋଇପାରୁ ନଥିଲେ। ଖାଦ୍ୟବସ୍ତ୍ର ବାସସ୍ଥାନ ଶିକ୍ଷା ସ୍ୱାସ୍ଥ୍ୟ ଆଦି ପ୍ରତ୍ୟେକ କ୍ଷେତ୍ରରେ ଅନଗ୍ରସର ହୋଇ ରହିଥିଲେ। ଅତ୍ୟଧିକ ରକ୍ଷଣଶୀଳ ମନୋବୃତ୍ତି ହେତୁ ଏମାନଙ୍କ ପ୍ରଗତି ପାଇଁ ସକଳ ପ୍ରଚେଷ୍ଟା ବ୍ୟର୍ଥ ହେଉଥିଲା। ଉଚ୍ଚ ବର୍ଗର ଲୋକଙ୍କ ସହ ଏମାନଙ୍କର ସଂପର୍କ ଭଲ ନଥିଲା। ସେମାନଙ୍କ ସରଳ ଜୀବନ ଧାରଣ ପଦ୍ଧତି ସଭ୍ୟ ସମାଜ ସଂସ୍ପର୍ଶରେ ଆସି ଜଟିଳତାପୂର୍ଣ୍ଣ ହୋଇଯିବା ଆଶଙ୍କାରେ ସେମାନେ ସହରଠାରୁ ଦୂରରେ ବଣଜଙ୍ଗଲ, ପାହାଡ଼ ପର୍ବତଘେରିରେ ବସତି ସ୍ଥାପନ କରୁଥିଲେ। ଶିକାର, ମଦ୍ୟପାନ, ନୃତ୍ୟଗୀତ ଆଦି ସେମାନଙ୍କ ବଞ୍ଚିବାର ମୁଖ୍ୟ ଉତ୍ତେଜନା ଥିଲା। ଏମାନଙ୍କର ସଞ୍ଚିତ ଅର୍ଥ ରାଜରାଜୁଡ଼ାଙ୍କ ପ୍ରତିନିଧି ମାନଙ୍କ ଦ୍ୱାରା ବାରମ୍ବାର ଲୁଣ୍ଠିତ ହେଉଥିବାରୁ ଏମାନେ ସଂଚୟ କରିବାପାଇଁ ଉତ୍ସାହିତ ହେଉ ନଥିଲେ। ଏହି ମାନସିକତା ସେମାନଙ୍କୁ ଆଳସ୍ୟପରାୟଣତା କରି ଦେଇଥିଲା। ଯାହା ରୋଜଗାର କରୁଥିଲେ ମଦ୍ୟ ବା ମନୋରଞ୍ଜନରେ ଶେଷ କରି ଦେଉଥିଲେ। ଏମାନଙ୍କ ଆର୍ଥିକ ମାନଦଣ୍ଡ ଅତ୍ୟନ୍ତ ନ୍ୟୁନ ଥିଲା। କିନ୍ତୁ ଅତ୍ୟନ୍ତ ସଂସ୍କୃତି ସଚେତନ ମଣିଷ ଏମାନେ। କୌଣସି ପରିସ୍ଥିତିରେ ଏମାନେ ସଂସ୍କୃତି ପରମ୍ପରାଠାରୁ ବିଚ୍ୟୁତ ହେବାକୁ ପସନ୍ଦ କରୁ ନଥିଲେ।

ବିକ୍ରମଦେବ ବର୍ମାଙ୍କ ସମୟକୁ ଏହାହିଁ ଥିଲା ଜୟପୁର ରାଜ୍ୟର ସାମାଜିକ ସ୍ଥିତି।

## ପ୍ରାଦେଶିକ ସଂପର୍କ:

ଜୟପୁର ରାଜ୍ୟର ସୂର୍ଯ୍ୟବଂଶୀ ରାଜାମାନେ ପ୍ରବଳ ପରାକ୍ରମୀ ଥିଲେ। ଦୀର୍ଘ ଚତୁର୍ବିଂଶତମ ରାଜପୁରୁଷ ପର୍ଯ୍ୟନ୍ତ ସେମାନେ ରାଜଗାଦୀକୁ ଅକ୍ଷୁର୍ଣ୍ଣ ରଖିଥିଲେ। କେବଳ ପରାକ୍ରମ ଦୃଷ୍ଟିରୁ ନୁହେଁ ପ୍ରଜାପାଳନ, ଲୋକହିତକର କାର୍ଯ୍ୟାବଳୀ, ଧାର୍ମିକ ଦୃଷ୍ଟିକୋଣ ଓ ପ୍ରାଦେଶିକ ରାଜ୍ୟମାନଙ୍କ ପ୍ରତି ସୁସଂପର୍କ ସ୍ଥାପନରେ ଏମାନେ ଅନନ୍ୟ ଥିଲେ। ଶୌର୍ଯ୍ୟ ବୀର୍ଯ୍ୟରେ ପ୍ରତିବେଶୀ ରାଜ୍ୟମାନଙ୍କୁ ପ୍ରଭାବିତ କରିଥିବାର ସୂଚନା ମିଳେ। ଜୟପୁରର ଜଣେ ରାଜା ତତ୍‌କାଳୀନ ଶକ୍ତିଶାଳୀ ପ୍ରତିବେଶୀ ରାଜ୍ୟ ବସ୍ତରକୁ ପରାସ୍ତ କରି ସେମାନଙ୍କର ଜାତୀୟ ପତାକା ଛଡ଼ାଇ ଆଣିଥିଲେ। ଅଦ୍ୟାବଧି ସେହି ପତାକା ଦଶହରା ପୂଜାରେ ବ୍ୟବହୃତ ହୋଇଆସୁଛି। ଏହା ଜୟପୁର ରାଜବଂଶର ଗୌରବର ପ୍ରତୀକ ରୂପେ ଗ୍ରହଣ କରା ହୋଇଥାଏ।

ହାଇଦ୍ରାବାଦର ନିଜାମ ଆସଫଜାହ ମରହଟ୍ଟାଙ୍କ ଆକ୍ରମଣରେ ଅତିଷ୍ଠ ହୋଇ ଜୟପୁର ରାଜା ଦ୍ୱିତୀୟ ବିଶ୍ୱମ୍ଭର ଦେବଙ୍କ ସାହାଯ୍ୟ ପ୍ରାର୍ଥି ହୋଇଥିଲେ। ରାଜା ବିଶ୍ୱମ୍ଭର ଦେବ ନିଜାମଙ୍କ ଅନୁରୋଧ ରକ୍ଷା କରି ମରହଟ୍ଟାମାନଙ୍କୁ ପରାସ୍ତ କରିବାରେ ତାଙ୍କୁ ସହଯୋଗ କରିଥିଲେ। ତାଙ୍କ ବୀରତ୍ୱରେ ମୁଗ୍ଧ ହୋଇ ନିଜାମ ତାଙ୍କୁ 'ଝାଡ଼ଖଣ୍ଡ ବାଦସାହୀ' ଉପାଧିରେ ଭୂଷିତ କରିଥିଲେ।

ଦ୍ୱିତୀୟ ବିଶ୍ୱମ୍ଭର ଦେବଙ୍କ ପରେ ତାଙ୍କ ବୈମାତ୍ରେୟ ଭାଇ ଲାଲକୃଷ୍ଣ ଦେବ ସିଂହାସନ ଆରୋହଣ କରିଥିଲେ। ତାଙ୍କ ଭାଇ ପ୍ରଥମ ବିକ୍ରମଦେବ ରାଜ୍ୟ ଦାବୀ କରିଥିଲେ। ବିଜୟ ନଗର ରାଜା ବିଜୟରାମରାଜୁ ତାଙ୍କୁ ବିଦ୍ରୋହ ପାଇଁ ସାହାଯ୍ୟ କରିଥିଲେ। ଫଳରେ ଲାଲକୃଷ୍ଣଦେବ ରାଜ୍ୟ ତ୍ୟାଗ କରି ପଳାୟନ କରିଥିଲେ ଓ ପ୍ରଥମ ବିକ୍ରମଦେବ ସିଂହାସନ ଆରୋହଣ କରିଥିଲେ। କୃତଜ୍ଞତା ସ୍ୱରୂପ ବିଜୟନଗର ରାଜା ବିଜୟରାମ ରାଜୁଙ୍କୁ ମାଡ଼ଗୁଲ୍ ଓ ସାଲୁର୍‌ର କିଛି ଅଂଶ ପ୍ରଦାନ କରିଥିଲେ। କିଛି ବର୍ଷ ରାଜୁତି କଲାପରେ ପୁଣି ଏହି ଅଞ୍ଚଳ ୪୦୦୦ ଟଙ୍କା ରାଜସ୍ୱ ଦେବାର ଚୁକ୍ତିବଦ୍ଧ ହୋଇ ଫେରାଇ ଆଣିଥିଲେ।

ବିଶ୍ୱମ୍ଭର ଦେବ (୧ମ)ଙ୍କ ଭାଇ ମଲ୍ଲଜୀ ମର୍ଦ୍ଦନ କୃଷ୍ଣଦେବଙ୍କ ସମୟରେ ଫରାସୀମାନେ ଜୟପୁର ରାଜ୍ୟ ଆକ୍ରମଣ କରିଥିଲେ। କିନ୍ତୁ ଜୟପୁର ସେନା ଫରାସୀମାନଙ୍କୁ ଦମନ କରି ସେମାନଙ୍କଠାରୁ ଅନେକ କମାଣ ଛଡ଼ାଇ ଆଣିଥିଲେ। ଅଦ୍ୟାବଧି ୧୪ଟି କମାଣ ରାଜପ୍ରାସାଦରେ ସୁରକ୍ଷିତ ଅଛି।

ଦ୍ୱିତୀୟ ରାମଚନ୍ଦ୍ରଦେବଙ୍କୁ ନାଗପୁର ରାଜା କୌଣସି କାରଣରୁ ଅନେକ ହାତୀ ପୁରସ୍କାର ଦେବାର ପ୍ରମାଣ ରହିଛି।

୧୯୭୪ ଖ୍ରୀଷ୍ଟାବ୍ଦରେ ବିଜୟ ନଗର ରାଜା ବିଜୟରାମ ରାଜୁଙ୍କ ସହ ଇଷ୍ଟଇଣ୍ଡିଆ କମ୍ପାନୀର ଯୁଦ୍ଧ ହୋଇଥିଲା। ସେତେବେଳେ ଜୟପୁରର ରାଜା ଦ୍ୱିତୀୟ ରାମଚନ୍ଦ୍ରଦେବ ଶାସନ କରୁଥିଲେ। ବିଜୟରାମ ରାଜୁଙ୍କୁ କୌଣସି ପ୍ରକାର ସାହାଯ୍ୟ ସହଯୋଗ ପ୍ରଦାନ ନ କରିବାରୁ ଇଷ୍ଟଇଣ୍ଡିଆ କମ୍ପାନୀ ତାଙ୍କୁ ବାର୍ଷିକ ପଚିଶି ହଜାର ଟଙ୍କା ରାଜସ୍ୱ ବିନିମୟରେ ଜୟପୁର ରାଜ୍ୟକୁ ଚିରସ୍ଥାୟୀ ସନନ୍ଦ ଦେଇଥିଲେ।

ଜୟପୁରର ରାଜାମାନେ ଇଂରେଜମାନଙ୍କ ସହ ସୁସଂପର୍କ ସ୍ଥାପନ କରିଥିଲେ। ତତ୍‌କାଳୀନ ଇଂରେଜ ସରକାର ତୃତୀୟ ବିକ୍ରମ ଦେବଙ୍କୁ କେ.ସି.ଆଇ.ଇ.ଉପାଧି ପ୍ରଦାନ କରିଥିଲେ।

ବିଶାଳତା ଦୃଷ୍ଟିରୁ ଜୟପୁର ରାଜ୍ୟ ତତ୍‌କାଳୀନ ରାଜ୍ୟମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଥିବାରୁ ପ୍ରତିବେଶୀ ରାଜ୍ୟମାନଙ୍କ ମଧ୍ୟରେ ଏକ ମର୍ଯ୍ୟାଦାଜନକ ସ୍ଥାନ ଅଧିକାର କରିଥିଲା। ସାହାଯ୍ୟ ସହଯୋଗ ଭିତ୍ତିକ ମାନସିକତା ହେତୁ ପ୍ରତିବେଶୀମାନଙ୍କ ସହ ଜୟପୁର ରାଜ୍ୟର ସୁସଂପର୍କ ଥିଲା। ରାଜାମାନଙ୍କର ଯଶୋକୀର୍ତ୍ତି ସୁଦୂର ବିସ୍ତାରୀ ଥିଲା।

# ଦ୍ୱିତୀୟ ଅଧ୍ୟାୟ

ବିକ୍ରମଦେବ ବର୍ମାଙ୍କ ଜୀବନଧାରା

(୧) ବାଲ୍ୟ କୈଶୋର
(୨) ପାରିବାରିକ ପଟ୍ଟଚିତ୍ର ଓ ବିକ୍ରମଙ୍କ ପ୍ରବାସ ଜୀବନ
(୩) ବିକ୍ରମ ଦେବଙ୍କ ବ୍ୟକ୍ତିତ୍ୱ ବିକାଶର ପୀଠସ୍ଥଳ
ବିଶାଖାପାଟଣା। ଜଗନ୍ମିତ୍ର ହଲ୍, ଓଡ଼ିଆ ସମାଜ
(୪) ଘରପୁଅ ଘରକୁ ଫେରିଲା।

## ବିକ୍ରମ ଦେବ ବର୍ମାଙ୍କ ଜୀବନଧାରା

**ବାଲ୍ୟ କୈଶୋର:**–ବିକ୍ରମଦେବ ବର୍ମାଙ୍କ ଜନ୍ମ ଓ ଜୀବନ ସଂପୂର୍ଣ୍ଣ ସଂଘର୍ଷମୟ ଥିଲା। ଜନ୍ମ ପୂର୍ବରୁ ତାଙ୍କ ପିତାମାତା ଦେଶାନ୍ତରୀ ହୋଇଥିଲେ। ପାରିବାରିକ କଳହ ହେତୁ ବିକ୍ରମଦେବ ବର୍ମାଙ୍କ ପିତା କୃଷ୍ଣଚନ୍ଦ୍ର ଦେବ ଜୟପୁର ପରିତ୍ୟାଗ କରି ଗଞ୍ଜାମ ଜିଲ୍ଲାର ପର୍ବତାଲା ପେଟା ଚାଲି ଯାଇଥିଲେ। ସେଠାରେ ତାଙ୍କର କେତେଜଣ ବିଶ୍ୱସ୍ତ ବନ୍ଧୁମାନଙ୍କ ସହାୟତାରେ କିଛି କାଳ ଅବସ୍ଥାନ କରିଥିଲେ। ସେହିଠାରେ ୧୮୬୯ ମସିହା ଜୁନ୍ ମାସ ୨୮ ତାରିଖ ରବିବାର ରାତି ୨ଟାରେ ତାଙ୍କର ପୁତ୍ର ସନ୍ତାନଟିଏ ଜାତ ହୋଇଥିଲା। ପରବର୍ତ୍ତୀ କାଳରେ ଏହି ଶିଶୁପୁତ୍ର ବିକ୍ରମଦେବ ବର୍ମା ନାମରେ ପରିଚିତ ହୋଇଥିଲେ। ଦୁଃଖ ଦାରିଦ୍ର୍ୟ ଅଭାବ ଅନାଟନ, ଅରକ୍ଷଭାବ ଓ ଅସହାୟତା ବିକ୍ରମଦେବଙ୍କ ବାଲ୍ୟ ଜୀବନକୁ ଅତ୍ୟନ୍ତ ଦୁର୍ବିସହ କରିଦେଇଥିଲା। ପର୍ବତାଲା ପେଟା ନିକଟବର୍ତ୍ତୀ ଏକ ତେଲୁଗୁ ବ୍ରାହ୍ମଣଶାସନ ନଗରୀ କଟକରେ କୃଷ୍ଣଚନ୍ଦ୍ର ଦେବ ପତ୍ନୀ ଓ ପୁତ୍ରଙ୍କୁ ନେଇ ବସବାସ କଲେ। ପର୍ବତାଲା ପେଟାରେ ବିଦ୍ୟାଳୟ ନଥିଲା। କିନ୍ତୁ ଏଠାରେ ଯେଉଁ ବିଦ୍ୟାଳୟ ଥିଲା ତାହା ତେଲୁଗୁ ଏଲିମେଣ୍ଟାରୀ ବିଦ୍ୟାଳୟ ଥିଲା। ଭାଗ୍ୟ ବିଡ଼ମ୍ବନା ହେତୁ ଓଡ଼ିଆ ପୁଅ ତେଲୁଗୁ ମାତୃଭାଷାରେ ନିଜର ପ୍ରାଥମିକ ଶିକ୍ଷା ଆରମ୍ଭ କରିଥିଲେ। ଏଠାରେ ୩ ବର୍ଷ କାଳ ତେଲୁଗୁ ଓ ଇଂରେଜୀ ଭାଷାରେ ବିଦ୍ୟା ଶିକ୍ଷା କଲେ। ଏହାପରେ ତାଙ୍କ ପୁରୋହିତ ଭାଇ ରଘୁନାଥ ରଥଙ୍କଠାରୁ କମଳ ଲୋଚନ ଚଉତିଶା, ଯଶୋଦା କୋଇଲି ଭାଗବତ, ଗୋପୀଭାଷା ରାସ ପଞ୍ଚାଧ୍ୟାୟୀ ମଥୁରା ମଙ୍ଗଳ ଆଦି ଶିକ୍ଷା କରିଥିଲେ। କେବଳ ସେତିକି ନୁହେଁ ସଂସ୍କୃତ ଭାଷାରେ ମଧ ତାଙ୍କର ଗଭୀର ଶ୍ରଦ୍ଧା ଥିଲା। ଅମରକୋଷ ବହିକୁ ସେ ସମ୍ପୂର୍ଣ୍ଣ ମୁଖସ୍ଥ କରି ଦେଇଥିଲେ। ନୀତି ମଞ୍ଜରୀ, କୃଷ୍ଣ ଶତକ ଆଦି ପୁସ୍ତକ ଅଧ୍ୟୟନ କରିଥିଲେ। ପିତା ଓ ଗୋବର୍ଦ୍ଧନ ରଥଙ୍କଠାରୁ ସେ ଜ୍ୟୋତିଷ ଶାସ୍ତ୍ର ଶିକ୍ଷାକରି

ସେଥିରେ ଗଭୀର ବ୍ୟୁତ୍ପତ୍ତି ଲାଭ କରିଥିଲେ। ତତ୍‌କାଳୀନ ଆନ୍ଧ୍ର ଜ୍ୟୋତିଷମାନେ ତାଙ୍କୁ ଗୁରୁତୁଲ୍ୟ ମାନ୍ୟତା ଦେଇ ତାଙ୍କ ପରାମର୍ଶ ଗ୍ରହଣ କରୁଥିଲେ।

ଆବାଲ୍ୟରୁ ବିକ୍ରମଦେବ ବର୍ମା ଧୀର, ଗମ୍ଭୀର ଓ ଦାର୍ଶନିକ ସୁଲଭ ଥିଲେ। ତାଙ୍କ ଭିତରେ ବାଲ୍ୟ ଚପଳତା କମ୍ ଥିଲା। ସେ ଶାନ୍ତଶିଷ୍ଟ ଗଭୀର ଅଧ୍ୟବସାୟୀ ଥିଲେ। ତାଙ୍କର ପ୍ରଖର ସ୍ମରଣ ଶକ୍ତି ଶିକ୍ଷକମାନଙ୍କୁ ଚମତ୍କୃତ କରୁଥିଲା। ଛାତ୍ର ଓ ଶିକ୍ଷକ ସମସ୍ତଙ୍କର ସେ ପ୍ରିୟପାତ୍ର ଥିଲେ।

## ପାରିବାରିକ ପଟ୍ଟଚିତ୍ର ଓ ବିକ୍ରମଙ୍କ ପ୍ରବାସ ଜୀବନ:

ବିକ୍ରମ ଦେବଙ୍କୁ ଯେତେବେଳେ ଆଠ଼ବର୍ଷ, ସେତିକି ବେଳୁ ତାଙ୍କ ଜୀବନର ବିପର୍ଯ୍ୟୟ ସମୟ ଉପସ୍ଥିତି ହୋଇଗଲା। ସେତେବେଳେ ମାଡ଼ଗୁଲ୍ ବିଶାଖାପାଟଣାର ଏକ ଅଂଶ ଥିଲା। ଏଠାରେ ଜୟପୁର ରାଜବଂଶୀୟ ରାଜାମାନେ ଶାସନ କରି ଆସୁଥିଲେ। ପ୍ରଥମେ ଯେତେବେଳେ କାଶ୍ମୀରରୁ ବିନାୟକ ଦେବ ଆସିଥିଲେ ସେ ନନ୍ଦପୁର ରାଜକନ୍ୟାଙ୍କର ପାଣିଗ୍ରହଣ କରି ନନ୍ଦପୁରରେ ରାଜା ହୋଇଥିଲେ। ତାଙ୍କ ସହ ଆସିଥିବା ତାଙ୍କ ସାନଭାଇଙ୍କୁ ମାଡ଼ଗୁଲ ପ୍ରଦାନ କରି ସେଠାରେ ଶାସନ କରିବାକୁ ନିର୍ଦ୍ଦେଶ ଦେଇଥିଲେ। କାଶ୍ମୀର ଉପାଧି ଭୂପତିଙ୍କୁ ଅନୁସାରେ ସେ ଚୋଳଭୂପତି ନାମରେ ପରିଚିତ ହେଲେ। ତା ପରଠାରୁ ଭୂପତି ବଂଶ ଏଠାରେ ରାଜତ୍ୱ କରୁଥିଲେ। ସେହି ବଂଶର ୨୪ତମ ରାଜା କୃଷ୍ଣ ଭୂପତି କଥିତ ସମୟକୁ ରାଜତ୍ୱ କରୁଥିଲେ। ତାଙ୍କର କାର୍ଯ୍ୟକାଳ ଥିଲା ୧୮୩୨ ରୁ ୧୮୭୫। ସେ ବିକ୍ରମଦେବଙ୍କ ପିତାଙ୍କର ଦୁଇ ମାଉସୀ ତଥା ଗୁଣୁପୁରର ରାଜକନ୍ୟା ସୀତା ପାଟମହାଦେଇ ଓ ନୀଳମଣି ଦେବୀଙ୍କୁ ବିବାହ କରିଥିଲେ। ତାଙ୍କର ପୁତ୍ର ସନ୍ତାନ ନଥିଲେ। ସାନରାଣୀଙ୍କ ଗର୍ଭରୁ ଅମ୍ବୀଦେବୀ ନାମକ ଏକ କନ୍ୟା ସନ୍ତାନ ଜନ୍ମ ହୋଇଥିଲା। ୧୮୭୫ରେ କୃଷ୍ଣ ଭୂପତିଙ୍କର ମୃତ୍ୟୁ ହୋଇଥିଲା। ମୃତ୍ୟୁ ପୂର୍ବରୁ ସେ ବିକ୍ରମଦେବ ବର୍ମାଙ୍କୁ ପୋଷ୍ୟପୁତ୍ର କରିବା ପାଇଁ ଉଇଲ୍ କରିଯାଇଥିଲେ। ସେହି ସୂତ୍ରରେ ବିକ୍ରମଦେବ ମାତ୍ର ଆଠବର୍ଷ ବୟସରେ ପିତା ମାତାଙ୍କୁ ଛାଡ଼ି ୧୮୭୬ ଖ୍ରୀଷ୍ଟାବ୍ଦରେ ମାଡ଼ଗୁଲ ରାଜ୍ୟରେ ଅବସ୍ଥାନ କଲେ। ସୀତା ପାଟମହାଦେଇ ତାଙ୍କୁ ପୁତ୍ରଠୁଁ ବଳି ଅଧିକ ସ୍ନେହ କରୁଥିଲେ। ସେଠାରେ ସେ ଯୁବରାଜ ମାନ୍ୟତା ପାଇ ମାତ୍ର ତିନିବର୍ଷ ରହିଛନ୍ତି କି ନାହିଁ ତାଙ୍କର ମାତୃବିୟୋଗ ଘଟିଲା। ସେ ଦୁଃଖରେ ଭାଙ୍ଗିପଡ଼ିଲେ। ମାତ୍ର ୧୦ ବର୍ଷର ବାଳକ ପିତାଙ୍କୁ ସାନ୍ତ୍ୱନା ଦେବାପାଇଁ ମାଡ଼ଗୁଲରୁ ଆସି ନଗରୀ କଟକରେ ପିତାଙ୍କ ସହ ଅବସ୍ଥାନ କଲେ।

ଇତ୍ୟବସରରେ ସାନ ରାଣୀ ନୀଳମଣି ଦେବୀ ପୋଷ୍ୟପୁତ୍ର ଦଲିଲ୍‌ଟି ଜାଲ ଓ ମିଥ୍ୟା ବୋଲି କହି ୧୮୮୧ରେ ଏକ ମୋକଦ୍ଦମା ଦାୟର କଲେ। ଦୁର୍ଭାଗ୍ୟବଶତଃ କୋର୍ଟର ରାୟ ତାଙ୍କ ସପକ୍ଷରେ ବି ଗଲା। କିନ୍ତୁ ବିକ୍ରମଦେବଙ୍କ ପିତା କୃଷ୍ଣଚନ୍ଦ୍ରଦେବ ଏହା ବିରୁଦ୍ଧରେ ମାନ୍ଦ୍ରାଜ କୋର୍ଟରେ କେସ୍ ଦାୟର୍ କଲେ। ମାନ୍ଦ୍ରାଜ୍ କୋର୍ଟ କୃଷ୍ଣଚନ୍ଦ୍ରଦେବଙ୍କ ସପକ୍ଷରେ ରାୟ ଦେଲେ କିନ୍ତୁ ଭାଗ୍ୟ ବିଡ଼ମ୍ବନା ହେତୁ କୋର୍ଟର ରାୟ ବାହାରିବା ବେଳକୁ କୃଷ୍ଣଚନ୍ଦ୍ର ଦେବ ଇହଧାମ ତ୍ୟାଗ କରିସାରିଥିଲେ।

୧୦ ବର୍ଷ ବୟସରେ ମାତୃବିୟୋଗ ଓ ୧୫ ବର୍ଷ ବୟସରେ ପିତୃବିୟୋଗ ବିକ୍ରମ ଦେବଙ୍କୁ ସଂପୂର୍ଣ୍ଣ ଅରକ୍ଷ କରିଦେଲା। କୋର୍ଟରେ ବିଜୟ ଲାଭ କରିଥିଲେ ସୁଦ୍ଧା ସେ ନାବାଳକ ଥିବାରୁ କୋର୍ଟଙ୍କ ଆଦେଶ ଅନୁସାରେ ମାଡ଼ଗୁଲ ଜମିଦାରୀକୁ କୋର୍ଟ ଅଫ୍ ୱାର୍ଡସ୍‌ଙ୍କୁ ନିଆଗଲା ଏବଂ Mr J.S. Biard ନାମକ ଜଣେ ସିଭିଲିଆନ୍‌ଙ୍କ ତତ୍ତ୍ୱାବଧାନରେ ସେ ବିଶାଖା ପାଟଣାରେ ରହିଲେ। ସେହିଠାରେ ସେ ଗୃହ ଶିକ୍ଷକ ବୌଡ଼ି ସାହେବଙ୍କଠାରୁ ୧୮ ମାସ କାଳ ଇଂରେଜୀ ଶିକ୍ଷା କରିଥିଲେ। ଏହାଛଡ଼ା ନିଜ ଚେଷ୍ଟାରେ ସେ ବହୁ ସଂସ୍କୃତ ଗ୍ରନ୍ଥ ଏହି ସମୟରେ ଅଧ୍ୟୟନ କରି ଦେଇଥିଲେ।

ପାରିବାରିକ ଶତ୍ରୁତା ତଥାପି ତାଙ୍କ ପିଛା ଛାଡ଼ି ନଥିଲା। ନୀଳମଣି ଦେବୀଙ୍କ କନ୍ୟା ଅମ୍ମୀ ଦେବୀ ତତ୍‌କାଳୀନ ଜୟପୁର ରାଜା ରାମଚନ୍ଦ୍ର ଦେବଙ୍କ ସାନଭାଇ ବିଶ୍ୱମ୍ଭର ଦେବଙ୍କୁ ବିବାହ କଲେ। ପୂର୍ବ ଶତ୍ରୁତାକୁ ଆଧାର କରି ରାମଚନ୍ଦ୍ର ଦେବ ବିକ୍ରମଦେବ ବର୍ମା ମାଡ଼ଗୁଲ୍‌ର ରାଜା ହୁଅନ୍ତୁ ଏହା ଚାହୁଁ ନଥିଲେ। ସେ ନୀଳମଣି ଦେବୀଙ୍କୁ ପୋଷ୍ୟପୁତ୍ର ସଂପର୍କୀୟ ରାୟ ବିରୁଦ୍ଧରେ ପୁଣି ଥରେ ଅପିଲ୍ କରିବାକୁ ପ୍ରବର୍ତ୍ତାଇଲେ। ସେଥିପାଇଁ ଆବଶ୍ୟକୀୟ ଆର୍ଥିକ ସାହାଯ୍ୟ ଦେବାପାଇଁ ମଧ୍ୟ ପ୍ରତିଶ୍ରୁତି ଦେଲେ। ଫଳରେ ନୀଳମଣି ଦେବୀ ଲଣ୍ଡନ ପ୍ରିଭି କାଉନ୍‌ସିଲ୍‌ରେ ଅପିଲ୍ କଲେ। ଲଣ୍ଡନ ପ୍ରିଭି କାଉନ୍‌ସିଲ୍ ମାନ୍ଦ୍ରାଜ କୋର୍ଟର ରାୟକୁ ଅସିଦ୍ଧ ଘୋଷଣା କରି ପୋଷ୍ୟପୁତ୍ର ଉଇଲ୍‌କୁ ରଦ୍ଦ କରିଦେଲେ। ନୀଳମଣି ଦେବୀ କିନ୍ତୁ ଏହି ରାୟକୁ ଶ୍ରବଣ କରିବାପାଇଁ ଆଉ ଇହଧାମରେ ନଥିଲେ। ବିକ୍ରମଦେବ ପୁଣି ବାସହରା ହୋଇଗଲେ। ମାଡ଼ଗୁଲ୍ ଜମିଦାରୀ ଚଳାଇବା ପାଇଁ ସୀତା ପାଟ ମହାଦେଇଙ୍କୁ କୋର୍ଟ ଅଫ୍ ୱାର୍ଡ୍‌ସ୍ ନିର୍ଦ୍ଦେଶ ଦେଲେ। ୧୯୦୧ ପର୍ଯ୍ୟନ୍ତ ସୀତା ପାଟ ମହାଦେଇ ମାଡ଼ଗୁଲ ଜମିଦାରୀର ସୁପରିଚାଳନା କରିଥିଲେ। ପୋଷ୍ୟପୁତ୍ର ଉଇଲ୍ ରଦ୍ଦ ହୋଇଯିବା ହେତୁ ବିକ୍ରମ ଦେବଙ୍କୁ ମାଡ଼ଗୁଲ୍ ରାଜ୍ୟରୁ କୌଣସି ସାହାଯ୍ୟ ସହାନୁଭୂତି ମିଳି ନଥିଲା। ୧୮୯୨ରେ ବିକ୍ରମଦେବଙ୍କର ବ୍ରତୋପନୟନ ହୋଇଥିଲା କିନ୍ତୁ ଏହାର ସମସ୍ତ ଖର୍ଚ୍ଚ ନୀଳମଣି ଦେବୀଙ୍କ କନ୍ୟା ତଥା ଜୟପୁର ରାଜା ବିଶ୍ୱମ୍ଭର ଦେବଙ୍କ ପତ୍ନୀ ଅମ୍ମୀ ଦେବୀ ସମସ୍ତ ଖର୍ଚ୍ଚ ବହନ କରିଥିଲେ। ତା ପୂର୍ବରୁ ୧୮୮୯ ଖ୍ରୀଷ୍ଟାବ୍ଦରେ ବିକ୍ରମ ଦେବ ବର୍ମା ଜୟପୁର ରାଜ୍ୟକୁ ଜ୍ୟେଷ୍ଠ ମାତାଙ୍କୁ ଦର୍ଶନ କରିବା ପାଇଁ ଯାଇଥିଲେ,

ତାହାହିଁ ଥିଲା ତାଙ୍କର ଜୟପୁରରେ ପ୍ରଥମ ପଦାର୍ପଣ। ଜ୍ୟେଷ୍ଠ ପିତା ରାଜା ରାମଚନ୍ଦ୍ରଙ୍କର ନାବାଳକ ପୁତ୍ରର ନାମ ମଧ୍ୟ ଥିଲା ବିକ୍ରମଦେବ। ସେତେବେଳ ପର୍ଯ୍ୟନ୍ତ ବିକ୍ରମଦେବ ବର୍ମାଙ୍କ ନାମରେ ବର୍ମା ପ୍ରୟୋଗ ହୋଇ ନଥିଲା। ଦୁଇଭାଇଙ୍କର ଗୋଟାଏ ନାମ ହୋଇଯିବାରୁ ସେ ନିଜ ନାମ ପଛରେ "ବର୍ମା" ବସେଇ ବିକ୍ରମଦେବ ବର୍ମା ନାମରେ ଖ୍ୟାତ ହେଲେ। ରାଜା ରାମଚନ୍ଦ୍ର ଦେବଙ୍କ ମୃତ୍ୟୁବେଳକୁ ତାଙ୍କ ପୁତ୍ର ବିକ୍ରମ ଦେବ ନାବାଳକ ଥିଲେ। ଜୟପୁର ରାଜ୍ୟ କୋର୍ଟ ଅଫ୍ ୱାର୍ଡ୍‌ସ୍ ହାତକୁ ଚାଲିଗଲା। ଯୁବରାଜ ବିକ୍ରମଦେବଙ୍କ ସହ ବିକ୍ରମଦେବ ବର୍ମାଙ୍କୁ ମଧ୍ୟ କୋର୍ଟ ଅଫ୍ ୱାର୍ଡ୍‌ସ୍ ତରଫରୁ ୩୫୦ ଟଙ୍କା ତଉଜି ମିଳିଲା। ବିକ୍ରମଦେବଙ୍କର ଆର୍ଥିକ ସମସ୍ୟା କିଛି ସମୟ ପାଇଁ ସୁଧୁରିଗଲା। ଏହା କିନ୍ତୁ ବେଶି ଦିନ ଚାଲିଲା ନାହିଁ। ବିକ୍ରମଦେବ ବର୍ମାଙ୍କ ବାଲ୍ୟ ଯୌବନ ସଂଘର୍ଷ ସଂଘାତମୟ ହେବାପାଇଁ ଯେପରି ବିଧିର ପ୍ରେରିତ ଥିଲା। ପୁଣି ତାଙ୍କୁ ବଞ୍ଚିବା ପାଇଁ ସଂଘର୍ଷ କରିବାକୁ ପଡ଼ିଥିଲା।

ବର୍ତ୍ତମାନର ନବରଙ୍ଗପୁର ଜିଲ୍ଲା ତତ୍‌କାଳୀନ ଜୟପୁର ରାଜ୍ୟ ଅନ୍ତର୍ଭୁକ୍ତ ଥିଲା। ରାଜା ଚୈତନ୍ୟଦେବ ଏଠାରେ ରାଜ୍ୟ ଶାସନ କରୁଥିଲେ। ତାଙ୍କର ମୃତ୍ୟୁପରେ ଜୟପୁର ରାଜା ବିକ୍ରମଦେବ ଚୈତନ୍ୟ ଦେବଙ୍କ ଦୁଇ ବିଧବା ରାଣୀଙ୍କୁ ରାଜ୍ୟ ଅଧିକାରରୁ ବଞ୍ଚିତ କରି ନବରଙ୍ଗପୁରକୁ ନିଜ ଶାସନାଧୀନ କରିଥିଲେ। ଫଳରେ ଦୁଇରାଣୀ କୋର୍ଟରେ ମକଦ୍ଦମା କରି ବିଜୟୀ ହୋଇଥିଲେ ଓ ନିଜ ରାଜ୍ୟ ଫେରି ପାଇଥିଲେ। ଏହି ସୂତ୍ରରେ ନବରଙ୍ଗପୁର ରାଜବଂଶ ବିକ୍ରମଦେବଙ୍କର ରୋଷର ଶିକାର ହୋଇଥିଲେ। ଘଟଣା ଚକ୍ରରେ ବଡ଼ରାଣୀଙ୍କର ମୃତ୍ୟୁପରେ ସାନରାଣୀ ନିଜର ଭ୍ରାତୃଷ୍ପୁତ୍ରୀ ତଥା ପାଟଣାଗଡ଼ର ନିରାକାର ସିଂ ଦେଓଙ୍କ କନ୍ୟା ରାଜକୁମାରୀ ହୀରା ଦେବୀଙ୍କ ସହ ବିକ୍ରମଦେବ ବର୍ମାଙ୍କର ବିବାହ ପ୍ରସ୍ତାବ ଆଗତ କଲେ। ଏହି ରାଣୀ ବିକ୍ରମଦେବ ବର୍ମାଙ୍କୁ ବହୁତ ଭଲ ପାଉଥିଲେ ଓ ତାଙ୍କର ଦୁରାବସ୍ଥାରେ ବ୍ୟଥିତ ହେଉଥିଲେ। କିନ୍ତୁ ରାଜା ବିକ୍ରମଦେବ ପୂର୍ବ ରୋଷ ଆଧାରରେ ଏହି ବିବାହକୁ ନିଷେଧ କଲେ। ରାଜାଜ୍ଞା ଅବମାନନା କରି ଯଦି ବିକ୍ରମଦେବ ପାଟଣା ରାଜକନ୍ୟାଙ୍କୁ ବିବାହ କରନ୍ତି ତାହେଲେ ତାଙ୍କର ତଉଜି ୩୫୦ ଟଙ୍କା କାଟି ଦେବାର ଧମକ ମଧ୍ୟ ଦେଲେ। କିନ୍ତୁ ଶତ ବାଧାବିଘ୍ନ ସତ୍ତ୍ୱେ ବିକ୍ରମଦେବ ବର୍ମା ପାଟଣାଗଡ଼ ରାଜକୁମାରୀଙ୍କୁ ବିବାହ କଲେ। ବିବାହର ସମସ୍ତ ଖର୍ଚ୍ଚ ନବରଙ୍ଗପୁର ରାଣୀ ବହନ୍ କରିଥିଲେ। ରାଜୋଚିତ ଆଡ଼ମ୍ବରରେ ମହାସମାରୋହରେ ବିବାହକାର୍ଯ୍ୟ ନବରଙ୍ଗପୁର ରାଜପ୍ରାସାଦରେ ଅନୁଷ୍ଠିତ ହେଲା।

ରାଜା ବିକ୍ରମଦେବଙ୍କ ପାଖରେ ଏ ସମ୍ବାଦ ପହଞ୍ଚିବାକ୍ଷଣି ସେ କ୍ରୋଧରେ ଅଜ୍ଞାନ ହୋଇଗଲେ ଓ ପୂର୍ବ ଧମକ ଅନୁସାରେ ତାଙ୍କର ତଉଜି ବନ୍ଦ କରିଦେଲେ। ବିକ୍ରମଦେବ ବର୍ମା କିନ୍ତୁ ନୀରବ ରହିଲେ ନାହିଁ। ଅଦାଲତର ଆଶ୍ରୟ ନେଇ ଏହି ବୃତ୍ତି ଛେଦ ବିରୁଦ୍ଧରେ

ମକଦ୍ଦମା କଲେ ଓ ବିଜୟ ଲାଭ କଲେ। ତଉଜିର ପରିମାଣ ୩୫୦ରୁ ୮୦୦ ଟଙ୍କାରୁ ବୃଦ୍ଧି ହେଲା। ବିକ୍ରମଦେବ ସସ୍ତ୍ରୀକ ବିଶାଖାପାଟଣାରେ ଅବସ୍ଥାନ କଲେ।

ଏହାପରେ ରାଜା ବିକ୍ରମଦେବ ଆହୁରି ପ୍ରତିଶୋଧ ପରାୟଣ ହୋଇପଡ଼ିଲେ। ସେ ଏହି ରାୟ ବିରୁଦ୍ଧରେ ମାନ୍ଦ୍ରାଜ ହାଇକୋର୍ଟରେ ଅପିଲ କଲେ। ବିକ୍ରମଦେବ ବର୍ମାଙ୍କୁ ଏଥିପାଇଁ ବହୁତ ଆର୍ଥିକ କ୍ଷତି ସହିବାକୁ ପଡ଼ିଥିଲା, କିନ୍ତୁ ସେ ହିଁ ଶେଷରେ ବିଜୟଶ୍ରୀ ମଣ୍ଡିତ ହୋଇଥିଲେ। ବିକ୍ରମ ଦେବଙ୍କର ପ୍ରତିହିଂସା ମନୋବୃତ୍ତି ହାର ମାନି ଥିଲା।

ବିକ୍ରମଦେବ ବର୍ମା ବିଶାଖାପାଟଣା ରହଣି ଭିତରେ ତାଙ୍କ ବିବାହର ଦୁଇବର୍ଷ ପରେ ଏକ କନ୍ୟା ସନ୍ତାନର ଜନକ ହୋଇଥିଲେ। ବାରମ୍ବାର କୋର୍ଟ କଚେରୀ ଓ ମୋକଦ୍ଦମାରେ ବହୁ ଅର୍ଥ ବ୍ୟୟିତ ହେବାଦ୍ୱାରା ତାଙ୍କର ଆର୍ଥିକ ଅସ୍ୱଚ୍ଛଳତା ତାଙ୍କୁ ପୀଡ଼ା ଦେଉଥିଲା। ତାଙ୍କର ଏହି ଦୁର୍ଦ୍ଦିନରେ ନବରଙ୍ଗପୁର ରାଣୀ ସହାୟତା କରୁଥିଲେ। ମାନ୍ଦ୍ରାଜ ହାଇକୋର୍ଟଙ୍କ ରାୟ ଅନୁସାରେ ଜୟପୁରର ସରକାରୀ ଏଜେଣ୍ଟ ସିନା ବିକ୍ରମଦେବଙ୍କୁ ମାସିକ ୮୦୦ ଟଙ୍କା ଦେବାର ନିଷ୍ପତ୍ତି ନେଲେ କିନ୍ତୁ ରାଜା ବିକ୍ରମଦେବ ଏଜେଣ୍ଟଙ୍କ ବିରୁଦ୍ଧରେ ପ୍ରିଭି କାଉନ୍‌ସିଲ୍‌ରେ ଅପିଲ୍ କଲେ। ଏହି ମକଦ୍ଦମା ୧୯୦୯ ଠାରୁ ୧୯୨୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଚାଲିଥିଲା।

ଏହି ଆର୍ଥିକ ସଂକଟ କାଳରେ ସୁଦ୍ଧା ବିକ୍ରମଦେବ ବର୍ମା ଭାଙ୍ଗିପଡ଼ି ନଥିଲେ। ଅଧ୍ୟୟନ ଦେଶସେବା ଓ ଦାନ ଏ ତିନୋଟି କାର୍ଯ୍ୟକୁ ବ୍ରତ ରୂପେ ଗ୍ରହଣ କରି ସେ ସକଳ ମାନସିକ ଚାପକୁ ଅତିକ୍ରମ କରିପାରିଥିଲେ। ଓଡ଼ିଆ, ତେଲୁଗୁ ଇଂରେଜୀ ଓ ସଂସ୍କୃତ ଆଦି ବିଷୟ ଅଧ୍ୟୟନ କରି ଏବଂ ପଣ୍ଡିତ ମାନଙ୍କ ସହ ଶାସ୍ତ୍ର ଆଲୋଚନା କରି ସେ ଅପୂର୍ବ ଆନନ୍ଦ ଅନୁଭବ କରୁଥିଲେ। ୧୯୦୮ ଖ୍ରୀଷ୍ଟାବ୍ଦରେ ତାଙ୍କଦ୍ୱାରା ତେଲୁଗୁ ଭାଷାରେ ରଚିତ ଶ୍ରୀନିବାସ କଲ୍ୟାଣମ୍, ମାନବତୀ ଚରିତମ୍ ଓ ନାଗାର୍ଜୁନ ଚରିତମ୍ ମାନ୍ଦ୍ରାଜ୍ ବିଶ୍ୱବିଦ୍ୟାଳୟ ପାଠ୍ୟପୁସ୍ତକ ରୂପେ ଗ୍ରହଣ କଲେ। ଏଥିରୁ ମିଳୁଥିବା ରୟାଲ୍‌ଟି ତାଙ୍କର ଦୁର୍ଦ୍ଦିନରେ ବେଶ୍ ଉପାଦେୟ ହୋଇଥିଲା।

କଠୋର ଦାରିଦ୍ର୍ୟ ଭିତରେ ଥିଲେ ସୁଦ୍ଧା ସେ ତାଙ୍କର ରାଜକୀୟ ଉଦାରତା ପରିତ୍ୟାଗ କରି ନଥିଲେ। ନିଜର ସାମର୍ଥ୍ୟ ଅନୁସାରେ ସେ କିଛି କିଛି ପୂର୍ବାହ୍ନରେ ଆପଣାର ଦାନପୂଣ୍ୟ କରୁଥିଲେ। ତାପରେ ଘର ଭିତରକୁ ଯାଇ ଇଷ୍ଟଦେବଙ୍କୁ ପୂଜା ଅର୍ଚ୍ଚନା କରି ନିଜର କର୍ମମୟ ଜୀବନ ଆରମ୍ଭ କରୁଥିଲେ। ଦୀର୍ଘ ୩୫ ବର୍ଷ କାଳ ବିଶାଖାପାଟଣାରେ ରହିବା ଫଳରେ ତାଙ୍କ ବ୍ୟକ୍ତିତ୍ୱର ବହୁ ଦିଗ ସେହିଠାରେ ହିଁ ବିକଶିତ ହୋଇଥିଲା। ସାହିତ୍ୟ ସହ ରଙ୍ଗମଞ୍ଚ, ସମାଜସେବା, ଆଦି କ୍ଷେତ୍ରରେ ସେ ପ୍ରଭୁତ୍ୱ ପ୍ରତିଷ୍ଠା ଲାଭ କରିଥିଲେ। ବିଶାଖା ପାଟଣାର ଗୁଣୀଜ୍ଞାନୀଙ୍କ ପାଖରୁ ସାଧାରଣ ଜନତାଙ୍କ ପର୍ଯ୍ୟନ୍ତ ସେ ସମସ୍ତଙ୍କର ପ୍ରିୟଭାଜନ ହୋଇ ପାରିଥିଲେ।

ବିଶାଖାପାଟଣାରେ ଓଡ଼ିଆ ସମାଜର ସଂଗଠକ, ଉତ୍କଳ ସମ୍ମିଳନୀର ସଭାପତି, ତେଲୁଗୁ ପାଠ୍ୟପୁସ୍ତକ ନିର୍ବାଚନ କମିଟିର ସଭ୍ୟ, ବିଶାଖାପାଟଣାର ଅବୈତନିକ ମାଜିଷ୍ଟ୍ରେଟ୍ ପଦ ଭଳି ବହୁ ଗୁରୁତ୍ୱପୂର୍ଣ୍ଣ ପଦପଦବୀ ଅଳଙ୍କୃତ କରିଥିଲେ। ପିତୃବ୍ୟ ବିକ୍ରମଦେବ ବର୍ମାଙ୍କ ପ୍ରତିଷ୍ଠାରେ ଗୌରବାନ୍ୱିତ ଅନୁଭବ କରୁଥିବା ରାମଚନ୍ଦ୍ରଦେବ ତାଙ୍କୁ ପ୍ରବାସ ଛାଡ଼ି ନିଜ ଦେଶକୁ ଫେରି ଆସିବାପାଇଁ ଅନୁରୋଧ କରିଥିଲେ। ପୁତୁରାର ସ୍ନେହ ଭକ୍ତି ସମ୍ମାନ ବୋଧ ତଥା ରାଷ୍ଟ୍ରର ଆକର୍ଷଣରେ ସେ ଆକର୍ଷିତ ହୋଇ ବିକ୍ରମଦେବ ଜୟପୁର ଆସିଥିଲେ। ପୂର୍ବର ପାରିବାରିକ କଳହର ପରିସମାପ୍ତି ହୋଇଥିଲା। ପ୍ରିଭି କାଉନ୍‌ସିଲ୍‌ରୁ ସେ ମାସିକ ଭତ୍ତାପାଇଁ କରିଥିବା ମକଦ୍ଦମା ପ୍ରତ୍ୟାହାର କରି ନେଇଥିଲେ। ରାମଚନ୍ଦ୍ର ଦେବ ତାଙ୍କ ପାଇଁ ଆଜୀବନ ଭତ୍ତା ବ୍ୟବସ୍ଥା କରିଦେଇଥିଲା। କିନ୍ତୁ ବିଶାଖାପାଟଣାରେ ସେ ଯେଉଁ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟପନ୍ଥା ଓ ଅନୁଷ୍ଠାନ ଗୁଡ଼ିକର ଶୁଭାରମ୍ଭ କରିଥିଲେ। ତାହାକୁ ପରିପୂର୍ଣ୍ଣ କରିବାପାଇଁ ସେ ବିଶାଖାପାଟଣା ଫେରି ଯାଇଥିଲେ। କିନ୍ତୁ ତା ପରଠାରୁ ସେ ନିୟମିତ ଜୟପୁର ରାଜ୍ୟ ପରିବାର ସହ ଯୋଗସୂତ୍ର ରକ୍ଷା କରୁଥିଲେ।

ଭ୍ରାତୃଷ୍ପୁତ୍ର ରାଜା ରାମଚନ୍ଦ୍ର ଦେବଙ୍କ ସହ ସୁସଂପର୍କ ରାଜା ବିକ୍ରମ ଦେବ ବର୍ମାଙ୍କ ଜୀବନର ଆର୍ଥିକ ଦୁରାବସ୍ଥାକୁ ବହୁ ପରିମାଣରେ ସ୍ୱଚ୍ଛଳ କରିଦେଇଥିଲା। ୧୯୨୦ ଖ୍ରୀଷ୍ଟାବ୍ଦ ପରଠାରୁ ସେ ସ୍ୱଚ୍ଛନ୍ଦ ଜୀବନ ଯାପନ କରି ବହୁ ଜନହିତକର କାର୍ଯ୍ୟରେ ନିଜକୁ ନିୟୋଜିତ କରି ପାରିଥିଲେ। ସେଥିପାଇଁ ଜୟପୁର ରାଜ ଇତିହାସ ରାଜା ୪ର୍ଥ ରାମଚନ୍ଦ୍ରଙ୍କ ମହାନତାକୁ ସ୍ୱର୍ଣ୍ଣାକ୍ଷରରେ ଧାରଣ କରି ରଖିଛି।

ବିକ୍ରମଦେବ ବର୍ମାଙ୍କର ପୁତ୍ର ସନ୍ତାନ ନଥିଲେ। ଏକମାତ୍ର କନ୍ୟା ମଣିଦେବୀ ୧୯୧୦ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲା। ତାଙ୍କର ବିବାହ କାର୍ଯ୍ୟ ମହା ସମାରୋହରେ ରାଜା ୪ର୍ଥ ରାମଚନ୍ଦ୍ରଦେବ ଜୟପୁର ରାଜ ପ୍ରାସାଦରେ ସଂପନ୍ନ କରାଇଥିଲେ। ତତ୍‌କାଳୀନ ସମ୍ବଲପୁର ରାଜ୍ୟ ଅନ୍ତର୍ଗତ ଇଚ୍ଛାଗଡ଼ର ରାଜା ସୁରେଶ୍ୱର ସିଂଙ୍କ ସୁପୁତ୍ର ବିଦ୍ୟାଧର ସିଂହ ଦେବ ମଣିଦେବୀଙ୍କ ପାଣିଗ୍ରହଣ କରିଥିଲେ। କଲିକତା ବିଶ୍ୱବିଦ୍ୟାଳୟରୁ ଓକିଲାତି ପାସ୍ କରିଥିବା ଉଚ୍ଚଶିକ୍ଷିତ ଜାମାତା ପାଇ ବିକ୍ରମଦେବ ବର୍ମା ବେଶ୍ ଆନନ୍ଦିତ ହୋଇଥିଲେ। ସେହି ବିଶାଖାପାଟଣାରେ ବିଦ୍ୟାଧର ସିଂ ବହୁକାଳ ଆଇନ୍ ବ୍ୟବସାୟ ଆରମ୍ଭ କରିଥିଲେ। ଜଣେ ବିଶିଷ୍ଟ ଐତିହାସିକ ଓ ପ୍ରତ୍ନତତ୍ତ୍ୱବିତ୍ ଭାବରେ ସେ ଖ୍ୟାତି ଅର୍ଜନ କରିଛନ୍ତି।

## ବିକ୍ରମଦେବଙ୍କ ବ୍ୟକ୍ତିଙ୍କ ବିକାଶର ପୀଠସ୍ଥଳ ବିଶାଖାପାଟଣା:-

ବିକ୍ରମ ଦେବବର୍ମାଙ୍କର କର୍ମମୟ ଜୀବନର ମହତ୍ତ୍ୱପୂର୍ଣ୍ଣ ସମୟ ବିଶାଖାପାଟଣାରେ ଅତିବାହିତ ହୋଇଥିଲା। ୧୮୮୫ ଖ୍ରୀଷ୍ଟାବ୍ଦରୁ ୧୯୨୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବରେ ସେ ବିଶାଖାପାଟଣାରେ ଅବସ୍ଥାନ କରିଥିଲେ। କର୍ମଯୋଗୀ ବିକ୍ରମ ବିଭିନ୍ନ

କ୍ଷେତ୍ରରେ ନିଜ ଦକ୍ଷତା ପ୍ରଦର୍ଶନ କରି ବହୁ ସମ୍ମାନର ଅଧିକାରୀ ହୋଇଥିଲେ। ତେଲୁଗୁ ଭାଷାଭାଷୀ ଅଞ୍ଚଳରେ ଅବସ୍ଥାନ କରି ସୁଦ୍ଧା ସେ ନିଜ ଦେଶ, ଜାତି, ଓ ଭାଷା ପ୍ରତି ନିଷ୍ପୃହ ନଥିଲେ। ତାଙ୍କର ଦୀର୍ଘ ୩୫ ବର୍ଷ ରହଣି କାଳରେ ସେ ଓଡ଼ିଆ ଓ ତେଲୁଗୁ ଭାଷାଭାଷୀ ଲୋକଙ୍କ ମଧ୍ୟରେ ସମନ୍ୱୟ ସ୍ଥାପନ ପାଇଁ ବହୁ ଉଦ୍ୟମ କରିଥିଲେ। କେବଳ ସେତିକି ନୁହେଁ, ଏଠାରେ ଅବସ୍ଥାନ କାଳରେ କଳା ସଂସ୍କୃତି ସାହିତ୍ୟ ସମାଜସେବା ଓ ରାଜନୀତି ଆଦି ବିଭିନ୍ନ କ୍ଷେତ୍ରରେ ବିକ୍ରମ ଦେବଙ୍କର ଅବଦାନ ଅବିସ୍ମରଣୀୟ ହୋଇ ରହିଛି। ନିମ୍ନରେ ବିକ୍ରମ ଦେବଙ୍କ ବିଶାଖା ପାଟଣାର କାର୍ଯ୍ୟାବଳୀ ସଂପର୍କରେ କିଞ୍ଚିତ୍ ସୂଚନା ଦିଆଗଲା।

## ଜଗନ୍ମିତ୍ର ହଲ୍:-

ବିକ୍ରମଦେବ ବର୍ମା ନାଟ୍ୟପ୍ରିୟ ମଣିଷଟିଏ ଥିଲେ। ତାଙ୍କର ନାଟ୍ୟ ପ୍ରବଣତା ତାଙ୍କୁ ରଙ୍ଗମଞ୍ଚ ନିର୍ମାଣ ଓ ନାଟକ ରଚନା ପାଇଁ ଉତ୍ସାହିତ କରିଥିଲା। ସେ ସମୟରେ ବିଶାଖା ପାଟଣାରେ ଜଗନ୍ମିତ୍ର ସମାଜ ନାମରେ ଏକ ସଂଘ ଥିଲା। ସେହି ସମାଜର ସଦସ୍ୟତା ଗ୍ରହଣ କରି ସେ ଅନୁଷ୍ଠାନ ନିମନ୍ତେ ଏକ ସ୍ଥାୟୀ ରଙ୍ଗମଞ୍ଚ ନିର୍ମାଣ କରିଥିଲେ। ଏହାର ନାମ ଜଗନ୍ମିତ୍ର ହଲ୍ ଥିଲା। ପ୍ରଥମେ ଏହି ରଙ୍ଗମଞ୍ଚରେ ତେଲୁଗୁ ନାଟକ ଅଭିନୀତ ହେଉଥିଲା। ପରେ ପରେ ବିଭିନ୍ନ ଓଡ଼ିଆ ନାଟ୍ୟକାର ମାନଙ୍କ ରଚିତ ଓଡ଼ିଆ ନାଟକ ମଞ୍ଚସ୍ଥ ହେଲା। ଏହି ରଙ୍ଗମଞ୍ଚ ନିମନ୍ତେ ସେ ସମୟରେ ସେ ଦଶ ସହସ୍ର ମୁଦ୍ରା ପ୍ରଦାନ କରିଥିଲେ। ଜଗନ୍ମିତ୍ର ସମାଜର ସେ ଜଣେ ପ୍ରମୁଖ ସଦସ୍ୟ ଥିବାରୁ ସେ ଜଗନ୍ମିତ୍ର ହଲ୍‌ର ସୁପରିଚାଳନା ପାଇଁ ସର୍ବଦା ତତ୍ପର ଥିଲେ। ଏହି ହଲ୍‌ର ନିତ୍ୟ ନୂତନତା ପାଇଁ ସେ ନିଜେ ଉଭୟ ତେଲୁଗୁ ଓ ଓଡ଼ିଆ ଭାଷାରେ ବହୁ ନାଟକ ରଚନା କରିଥିଲେ। ତାଙ୍କର ପ୍ରଥମ ନାଟକ ରାଧାମାଧବ ଏହିଠାରେ ଅଭିନୀତ ହୋଇଥିଲା। ଏହା ତାଙ୍କର ପ୍ରଥମ ନାଟକ ହୋଇଥିଲେ ସୁଦ୍ଧା ତା'ର ସୁନ୍ଦର ପରିବେଷଣ ଶୈଳୀ, ବିଷୟବସ୍ତୁ ଓ ମନୋମୁଗ୍ଧକର ସଂଳାପ ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରି ଦେଇଥିଲା। ଏହାପରେ ଅବିଚ୍ଛିନ୍ନ ଭାବରେ ସେ ନାଟକ ରଚନା ଓ ମଞ୍ଚସ୍ଥ କରିବାର ଦାୟିତ୍ୱ ହସ୍ତକୁ ନେଇଥିଲେ। ସେ ରଚନା କରିଥିବା ତେଲୁଗୁ ନାଟକ ମାନଙ୍କ ମଧ୍ୟରେ "ନାଗାର୍ଜୁନ ଚରିତମ୍" "ମାନବତୀ ଚରିତ୍ରମ୍" "ଶ୍ରୀନିବାସ କଲ୍ୟାଣମ୍" ଆଦି ପ୍ରଧାନ। ଗୋଟିଏ ରଙ୍ଗମଞ୍ଚରେ ଉଭୟ ତେଲୁଗୁ ଓଡ଼ିଆ ନାଟକ ଅଭିନୀତ ହେବାଦ୍ୱାରା ସେ ଦୁଇ ଭାଷାଭାଷୀ ଲୋକଙ୍କର ପ୍ରିୟ ଓ ପ୍ରଶଂସା ଭାଜନ ହୋଇପାରିଥିଲେ। ଆନ୍ଧ୍ର ଓ ଓଡ଼ିଶା ସାହିତ୍ୟର ଇତିହାସରେ ଏଥିପାଇଁ ତାଙ୍କୁ ମର୍ଯ୍ୟାଦାଜନକ ସ୍ଥାନ ମିଳିଥିଲା। କିନ୍ତୁ ଦୁଃଖର କଥା ଏହି ରଙ୍ଗମଞ୍ଚ ପ୍ରାକୃତିକ ବିପର୍ଯ୍ୟୟର ଶିକାର ହୋଇପଡ଼ିଲା। ଏଠାକାର ବହୁମୂଲ୍ୟ ଉପକରଣ ଓ ହଲ୍‌ଟି ୧୯୨୩ ମସିହାରେ

ଏକ ପ୍ରବଳ ଝଡ଼ତୋଫାନରେ ନଷ୍ଟ ହୋଇଗଲା । ସଂସ୍କୃତି ଓ ସମନ୍ୱୟର ପୀଠ ଜଗନ୍ମିତ୍ର ହଲ୍‌ର କ୍ଷୟକ୍ଷତି ବିକ୍ରମ ଦେବଙ୍କୁ ଦାରୁଣ ଯନ୍ତ୍ରଣା ଦେଇଥିଲା ।

ଏହାପରେ ସେ ସେହି ସ୍ଥାନରେ ଶ୍ରୀରାମଲୀଳା ନାମକ ଆଉ ଏକ ରଙ୍ଗମଞ୍ଚ ସ୍ଥାପନ କରିଥିଲେ । ଏଠାରେ କେବଳ ଶ୍ରୀରାମଙ୍କର ଜନ୍ମଠାରୁ ରାବଣର ମୃତ୍ୟୁ ପର୍ଯ୍ୟନ୍ତ ଆଖ୍ୟାନ ଉପାଖ୍ୟାନକୁ ନାଟ୍ୟରୂପ ଦିଆଯାଇ ଅଭିନୀତ ହେଉଥିଲା । ବିକ୍ରମଦେବ ବର୍ମାଙ୍କ ପାଣ୍ଡିତ୍ୟ ପ୍ରତିଭାତାଙ୍କୁ ଯେପରି ବୁଦ୍ଧିଜୀବୀ ମହଲରେ ଗୌରବ ପ୍ରଦାନ କରିଥିଲା ତାଙ୍କର ନାଟ୍ୟପ୍ରିୟତା ତାଙ୍କୁ ସାଧାରଣ ଜନତାଙ୍କ ଭିତରେ ଅତି ପରିଚିତ କରାଇଥିଲା ।

## ଓଡ଼ିଆ ସମାଜ:

ଆନ୍ଧ୍ରପ୍ରଦେଶରେ ବସବାସ କରୁଥିବା ଓଡ଼ିଆମାନେ ତତ୍‌କାଳୀନ ସମୟରେ ଅତ୍ୟନ୍ତ ଦୟନିୟ ଅବସ୍ଥାରେ ଥିଲେ । ସେମାନଙ୍କ ମଧ୍ୟରେ ସମନ୍ୱୟ ଅଭାବରୁ ପରସ୍ପର ପରସ୍ପରର ଦୁରବସ୍ଥା ସଂପର୍କରେ ଅଜ୍ଞ ରହୁଥିଲେ । ସେମାନଙ୍କୁ ସରକାରୀ ଚାକିରୀ ନିଯୁକ୍ତିରେ ଅବହେଳା ପ୍ରଦର୍ଶନ କରାଯାଉଥିଲା । ସେମାନଙ୍କର ଅଭାବ ଅସୁବିଧା ଉପସ୍ଥାପନ କରିବାପାଇଁ କୌଣସି ମଞ୍ଚ ନଥିଲା । ସେତେବେଳେ ବିଶାଖାପାଟଣାରେ ଦୁଇତିନିଘର ଓଡ଼ିଆ ଥିଲେ, କିନ୍ତୁ ନିକଟବର୍ତ୍ତୀ ଗ୍ରାମ ଆଲିପୁରରେ ଚାଳିଶ ପଚାଶ ଘର କରଣ ପରିବାର ଥିଲେ । ସେମାନେ ତେଲୁଗୁ ଭାଷା ଭାଷୀ ଅଞ୍ଚଳରେ ରହି ସୁଦ୍ଧା ନିଜର ମାତୃଭାଷା ଓ ସଂସ୍କୃତି ପରମ୍ପରା ଅକ୍ଷୁଣ୍ଣ ରଖିବାପାଇଁ ଶିଷ୍ଟକରଣ ସମିତି ନାମକ ଏକ ସମିତି ଗଠନ କରି ଓଡ଼ିଆ ମାନଙ୍କର ସ୍ୱାର୍ଥ ସୁରକ୍ଷାପାଇଁ ଯତ୍‌ପରୋନାସ୍ତି ଉଦ୍ୟମ କରୁଥିଲେ । ଏହି ପ୍ରାଥମିକ ଉଦ୍ୟମକୁ ଆହୁରି ବିସ୍ତୃତ ରୂପ ଦେବାପାଇଁ ବିକ୍ରମଦେବ ବର୍ମା ଶିଷ୍ଟକରଣ ସମିତିକୁ 'ଓଡ଼ିଆ ସମାଜ'ରେ ପରିବର୍ତ୍ତନ କରି ନିଜେ ତାହାର ସ୍ଥାୟୀ ସଭାପତି ପଦରେ ରହିଥିଲେ । ଏହି ସଂଗଠନଟି ସେ ସମୟରେ ସେ ଅଞ୍ଚଳରେ ବସବାସ କରୁଥିବା ଓଡ଼ିଆ ମାନଙ୍କର ଅଶେଷ ଉପକାର ସାଧନ କରିଥିଲା ।

ଓଡ଼ିଆ ସମାଜର ସଭାପତି ରୂପେ ସେ ଜିଲ୍ଲା ବୋର୍ଡ଼, ମୁନିସ୍‌ପାଲ୍‌ଟି ଓ ଅନ୍ୟାନ୍ୟ ପଦସ୍ଥ ଅଧିକାରୀମାନଙ୍କୁ ସୁପାରିଶ୍ କରି ଓଡ଼ିଆ ମାନଙ୍କ ହିତ ପାଇଁ ଅନେକ କାର୍ଯ୍ୟ କରିଥିଲେ । ଓଡ଼ିଆ ଛାତ୍ରମାନଙ୍କ ପାଇଁ ସରକାରୀ ଚାକିରୀରେ ଯେଉଁ କଟକଣା ଥିଲା ତାର ଉଚ୍ଛେଦ କରିପାରିଥିଲେ । ଓଡ଼ିଶାର ଉପାନ୍ତ ଅଞ୍ଚଳରୁ ଯେଉଁ ଛାତ୍ରମାନେ ଅଧ୍ୟୟନ ପାଇଁ ବିଶାଖାପାଟଣା ଯାଉଥିଲେ ସେମାନଙ୍କୁ 'ଓଡ଼ିଆ ସମାଜ'ର ଗୃହରେ ଅବସ୍ଥାନ କରିବାପାଇଁ ସୁଯୋଗ ଦିଆଯାଉଥିଲା । ଏମାନଙ୍କ ଭିତରୁ ଅନେକ ଗରିବ ଛାତ୍ରଙ୍କୁ ରାଜା ବିକ୍ରମଦେବ ସ୍ୱହସ୍ତରୁ ଅର୍ଥ ସହାୟତା କରୁଥିଲେ। ଓଡ଼ିଆ ସମାଜର ଆର୍ଥିକ ଦୁରବସ୍ଥା ଦୂରୀଭୂତ କରିବାପାଇଁ ସେ ସ୍ଥାନୀୟ ମ୍ୟୁନିସ୍‌ପାଲ୍‌ଟି ଓ ମାନ୍ଦ୍ରାଜ ସରକାରଙ୍କଠାରୁ ସେତେବେଳେ ମାସିକ ପଚାଶ ଟଙ୍କା ଲେଖାଏଁ ସାହାଯ୍ୟ ପ୍ରାପ୍ତିର ବ୍ୟବସ୍ଥା କରିପାରିଥିଲେ ।

ମାନ୍ଦ୍ରାଜ ଲାଇବ୍ରେରୀ ଆକ୍ଟ ଆନୁକୁଲ୍ୟରେ ରେଜିଷ୍ଟ୍ରିଭୁକ୍ତ କରି ସେ ବହିପତ୍ର ଓ ଲାଇବ୍ରେରୀ ଉପକରଣମାନ ସଂଗ୍ରହ କରିପାରିଥିଲେ। ଓଡ଼ିଆ ଛାତ୍ରମାନେ ଏହି ପାଠାଗାରରୁ ସୁବିଧା ନେଇପାରୁଥିଲେ।

ଓଡ଼ିଆ ଦେଶ ମିଶ୍ରଣ ଆନ୍ଦୋଳନରେ ଏହି ଓଡ଼ିଆ ସମାଜର ପ୍ରମୁଖ ଭୂମିକା ଥିଲା। ବିକ୍ରମଦେବ ବର୍ମାଙ୍କ ପରି ଜଣେ ଆଦର୍ଶ ନେତା ଓ କଠୋର କର୍ମଯୋଗୀଙ୍କ ପ୍ରେରଣା ପାଇ ସେ ଅଞ୍ଚଳର ଓଡ଼ିଆମାନେ ହୃତ ଆତ୍ମବିଶ୍ୱାସ ଫେରି ପାଇଥିଲେ। ସ୍ୱାଭିମାନର ସହ ପ୍ରାଦେଶିକ ରାଜ୍ୟରେ ବସବାସ କରୁଥିଲେ ସୁଦ୍ଧା ନିଜ ଜନ୍ମମାଟି ପାଇଁ ନିଷ୍ଠାର ସହ ସଂଗ୍ରାମ କରୁଥିଲେ। ସମ୍ମାନର ସହ ବିଦେଶ ଭୂଇଁରେ ନିଜର ଆତ୍ମ ପରିଚୟ ଜାହିର କରୁଥିଲେ। ଓଡ଼ିଆ ସମାଜର ଦୁଃଖ ଦୁର୍ଦ୍ଦଶା ଦୂରୀଭୁତ କରିବାପାଇଁ ତାଙ୍କର ନିଷ୍ଠା, ଆନ୍ତରିକତା, ନିର୍ଭୀକତା ଆଦି ଦ୍ୱାରା ସେ ସରକାରୀ ସ୍ତରରେ ବେଶ୍ ସୁପରିଚିତ ଥିଲେ ଓ ସୁନାମ ମଧ୍ୟ ଅର୍ଜନ କରିପାରିଥିଲେ। ଏହି ଆଧାରରେ ସେ ସରକାରୀ ଦଳର ବିଶ୍ୱାସଭାଜନ ହୋଇପାରିଥିଲେ। ଯାହା ଫଳରେ ପରବର୍ତ୍ତୀ ପର୍ଯ୍ୟାୟରେ ସରକାରୀ ସ୍ତରରେ ବହୁ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ଆନ୍ଧ୍ର ସରକାର ତାଙ୍କୁ ଅର୍ପଣ କରିଥିଲେ।

ବିକ୍ରମ ଦେବ ବର୍ମା ଦୀର୍ଘ ପାଞ୍ଚବର୍ଷ କାଳ ଅବୈତନିକ ପ୍ରଥମ ଶ୍ରେଣୀ ମାଜିଷ୍ଟ୍ରେଟ୍ ରୂପେ କାର୍ଯ୍ୟ କରିଥିଲେ। ମାନ୍ଦ୍ରାଜ ସରକାରଙ୍କର ତାଙ୍କ ଦକ୍ଷତା ଉପରେ ଆସ୍ଥା ଥିଲା। ତାଙ୍କର ନୀତି ନିଷ୍ଠତାରେ ଜନସାଧାରଣ ବେଶ୍ ଉପକୃତ ହୋଇଥିଲେ। ପାଞ୍ଚବର୍ଷ କାର୍ଯ୍ୟକାଳ ପରିସମାପ୍ତି ପରେ ମାନ୍ଦ୍ରାଜ ସରକାର ଆଉ ପାଞ୍ଚବର୍ଷ ଏହି ଦାୟିତ୍ୱ ସଂପନ୍ନ କରିବାପାଇଁ ଅନୁରୋଧ କରିଥିଲେ। କିନ୍ତୁ ବିକ୍ରମଦେବ ବର୍ମା ନମ୍ରତାର ସହ ଏହା ପ୍ରତ୍ୟାଖ୍ୟାନ କରିଥିଲେ। ସେ କ୍ଷମତା ଲିପ୍ସୁ ନଥିଲେ, ଅଥବା ପଦପଦବୀ ପାଇଁ ତାଙ୍କର ଲାଳସା ନଥିଲା। ଜନହିତକର କାର୍ଯ୍ୟ କରିବା, ସେମାନଙ୍କ ଉଦ୍ଦେଶ୍ୟରେ ନିଜକୁ ଉତ୍ସର୍ଗ କରିବାରେ ହିଁ ସେ ଆନନ୍ଦ ପାଉଥିଲେ।

ବିକ୍ରମଦେବ ବର୍ମା ଅସାଧାରଣ ପାଣ୍ଡିତ୍ୟର ଅଧିକାରୀ ଥିଲେ। ସେ ସଂସ୍କୃତ ଓଡ଼ିଆ ଓ ତେଲୁଗୁ ଭାଷାରେ ଗଭୀର ବ୍ୟୁତ୍ପତ୍ତି ଲାଭ କରିଥିଲେ। ତାଙ୍କର ପାଣ୍ଡିତ୍ୟ ସରକାର ବାହାଦୂରଙ୍କ ଦୃଷ୍ଟିପଥକୁ ଏଡ଼ିଯାଇପାରି ନଥିଲା। ତେଣୁ ମାନ୍ଦ୍ରାଜ ସରକାରରେ ଶିକ୍ଷା ବିଭାଗର ବହୁ ଗୁରୁତ୍ୱପୂର୍ଣ୍ଣ ବୈଠକ ମାନଙ୍କରେ ଯୋଗଦାନ କରିବାପାଇଁ ସରକାର ତାଙ୍କୁ ନିମନ୍ତ୍ରଣ କରୁଥିଲେ। ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ପାଇଁ ତେଲୁଗୁ ପାଠ୍ୟକ୍ରମ ନିର୍ବାଚନ କମିଟିରେ ସେ ଦୀର୍ଘ ଚାରିବର୍ଷକାଳ ସଦସ୍ୟ ଥିଲେ। ଏହାଛଡ଼ା ଏଲିମେଣ୍ଟାରୀ ଓ ସେକେଣ୍ଡାରୀ ଶିକ୍ଷା ବିଭାଗର ସେ ସ୍ଥାୟୀ ସଦସ୍ୟ ରୂପେ କାର୍ଯ୍ୟ କରିଥିଲେ। ବିଶାଖାପାଟଣା ଅବସ୍ଥାନ କାଳରେ ସୁଦ୍ଧା ସେ ନିଜ ମାତୃଭାଷା ଓଡ଼ିଆ ଭାଷାର ସ୍ଥିତି ସୁରକ୍ଷା ପାଇଁ ବହୁ

ପ୍ରଯତ୍ନ କରିଥିଲେ। ୧୯୨୮ ଖ୍ରୀଷ୍ଟାବ୍ଦରେ ପାଟଣାଠାରେ ଅନୁଷ୍ଠିତ ଓଡ଼ିଆ ଭାଷା ଅନୁସନ୍ଧାନ କମିଟିରେ ସେ ବେଶ୍ ଉପାଦେୟ ବକ୍ତବ୍ୟମାନ ପ୍ରଦାନ କରିଥିଲେ।

ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟକୁ ତାଙ୍କର ଦାନ ଅତୁଳନୀୟ। ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ପାଠ୍ୟକ୍ରମରେ ତାଙ୍କର ତିନିଖଣ୍ଡ ତେଲୁଗୁ ନାଟକ ଶ୍ରୀନିବାସ କଲ୍ୟାଣ, ନାଗାର୍ଜୁନ ଚରିତମ୍, ଓ ମାନବତୀ ଚରିତମ୍ ବହୁକାଳ ପର୍ଯ୍ୟନ୍ତ ପ୍ରଚଳିତ ଥିଲା। ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟକୁ ସେ ବଞ୍ଚିଥିବା ପର୍ଯ୍ୟନ୍ତ ଜୟପୁର ରାଜକୋଷରୁ ପ୍ରତିବର୍ଷ ଏକଲକ୍ଷ ଟଙ୍କା ଲେଖାଏଁ ଅନୁଦାନ ଦେଉଥିଲା।

ମାନ୍ଦ୍ରାଜ ସରକାର ଯେ କେବଳ ବିକ୍ରମଦେବ ବର୍ମାଙ୍କଠାରୁ ଶିକ୍ଷା ବିଭାଗର ବିକାଶ ପାଇଁ ପରାମର୍ଶ ଗ୍ରହଣ କରୁଥିଲେ ତାହା ନୁହେଁ ପ୍ରଶାସନର ଅନ୍ୟାନ୍ୟ କ୍ଷେତ୍ରରେ ଦାୟିତ୍ୱ ସମ୍ଭାଳିବା ପାଇଁ ଆନ୍ଧ୍ର ସରକାର ତାଙ୍କୁ ଅନୁରୋଧ କରୁଥିଲେ। ଜିଲ୍ଲାବୋର୍ଡ଼ ଓ ମ୍ୟୁନିସିପାଲ୍‌ଟିର ମନୋନୀତ ସଦସ୍ୟ ରୂପେ ଦାୟିତ୍ୱ ସଂପନ୍ନ କରିବାପାଇଁ ନିମନ୍ତ୍ରଣ କରାଯାଇଥିଲା, କିନ୍ତୁ ମ୍ୟୁନିସ୍‌ପାଲ୍‌ଟିର ସେତେବେଳେ ଏକ ମୁଖ୍ୟ ଉପାର୍ଜନ ଥିଲା କାଞ୍ଜିଆ ହାଉସ୍ ଓ କଂସେଇଖାନା। ସେଥିରୁ ରାଜସ୍ୱ ଆଦାୟ କରାଯାଉଥିବାରୁ ବିକ୍ରମଦେବ ଏଥିରେ ସଭ୍ୟ ହେବାପାଇଁ ଅନିଚ୍ଛା ପ୍ରକାଶ କରିଥିଲେ।

ବିକ୍ରମଦେବ ବର୍ମା ଅନନ୍ୟ ପାଣ୍ଡିତ୍ୟର ଅଧିକାରୀ ଥିଲେ। ଜଣେ ଶିକ୍ଷାବିତ୍ ଓ ଆଦର୍ଶ ଚିନ୍ତାନାୟକ ଭାବରେ ଆନ୍ଧ୍ରପ୍ରଦେଶରେ ତାଙ୍କର ବେଶ୍ ପ୍ରସିଦ୍ଧି ଥିଲା। ତେଲୁଗୁ ଭାଷାରେ ଗଭୀର ବ୍ୟୁତ୍ପତ୍ତି ଥିବା ହେତୁ ତେଲୁଗୁ ସାହିତ୍ୟିକ ଓ ପଣ୍ଡିତ ମାନଙ୍କ ମଧ୍ୟରେ ତାଙ୍କର ଏକ ମର୍ଯ୍ୟାଦାଜନକ ସ୍ଥାନ ଥିଲା। ତେଲୁଗୁ ସାହିତ୍ୟିକ ଓ ପଣ୍ଡିତମାନେ ତାଙ୍କୁ ତେଲୁଗୁ ଭାଷାରେ ପତ୍ର ଆଦାନପ୍ରଦାନ କରୁଥିଲେ। ତେଲୁଗୁ ଭାଷା ସାହିତ୍ୟ ସମ୍ମିଳନୀରେ ଯୋଗ ଦେବାପାଇଁ ନିମନ୍ତ୍ରଣ କରୁଥିଲେ। ଆନ୍ଧ୍ର ଜାତୀୟ ଓ ସାହିତ୍ୟିକ ସମ୍ମିଳନୀରେ ଏକାଧିକବାର ସେ ସଭାପତି ପଦ ସୁଦ୍ଧା ଅଳଙ୍କୃତ କରିଥିଲେ। ୧୯୦୩ରେ ବିଶାଖାପାଟଣାଠାରେ ଆନ୍ଧ୍ର ଜିଲ୍ଲା ସମ୍ମିଳନୀର କାର୍ଯ୍ୟ ନିର୍ବାହୀ ସମିତିର ପ୍ରଥମ ଅଧିବେଶନରେ ବିକ୍ରମଦେବ ବର୍ମା ସଭାପତି ପଦ ଅଳଙ୍କୃତ କରିଥିଲେ। ଏହାଛଡ଼ା ୧୯୧୭ ଖ୍ରୀଷ୍ଟାବ୍ଦରେ ଏହି ସମ୍ମିଳନୀର ଅଧିବେଶନରେ ସଭାପତି ରୂପେ ସେ ଯେଉଁ ବକ୍ତବ୍ୟ ପ୍ରଦାନ କରିଥିଲେ ତାହା ବେଶ୍ ପ୍ରେରଣା ଦାୟକ ଥିଲା। ତାଙ୍କର ସ୍ୱଦେଶ ପ୍ରୀତି, ଜାତିବତ୍ସଳତା ପ୍ରମାଣ ତାଙ୍କର ଏହି ବକ୍ତବ୍ୟର ଛତ୍ରେ ଛତ୍ରେ ପ୍ରତିଫଳିତ। (୧) ପୃ.୩୧ (ରାଜକବି, ବିକ୍ରମଦେବ ବର୍ମା।)

୧୯୨୩ ଖ୍ରୀଷ୍ଟାବ୍ଦରେ ଗୋଦାବରୀ ଜିଲ୍ଲା ଅନ୍ତର୍ଗତ ତୁନି ଗ୍ରାମରେ ଆନ୍ଧ୍ର ସାହିତ୍ୟ ପରିଷଦର ଏକାଦଶ ଅଧିବେଶନ ଅନୁଷ୍ଠିତ ହୋଇଥିଲା। ସେତେବେଳେ ମଧ୍ୟ ବିକ୍ରମଦେବ ବର୍ମା ସଭାପତି ପଦ ଅଳଙ୍କୃତ କରିବାର ଗୌରବ ଅର୍ଜନ କରିଥିଲେ। ଏହାଛଡ଼ା

ମୁଖଲିଙ୍ଗମ୍‌ଠାରେ ଅନୁଷ୍ଠିତ ଐତିହାସିକ ସଭାର କାର୍ଯ୍ୟନିର୍ବାହୀ ସଭାପତି ଦାୟିତ୍ୱ ସୁଚାରୁ ରୂପେ ସଂପାଦନା କରିଥିଲେ।

ବିଶାଖାପାଟଣା ସହର ରାଜା ବିକ୍ରମଦେବ ବର୍ମାଙ୍କ ବ୍ୟକ୍ତିତ୍ୱକୁ ବିକଶିତ କରିବାପାଇଁ ପ୍ରଭୁତ ପରିସର ସୃଷ୍ଟି କରିଥିଲା। ତାଙ୍କର ନିରଳସ ବ୍ୟକ୍ତିତ୍ୱ ତାଙ୍କ ଅନ୍ତର୍ନିହିତ ଦକ୍ଷତାକୁ ଲୋକହିତକର କାର୍ଯ୍ୟରେ ବିନିଯୋଗ କରିବାରେ ସମର୍ଥ ହୋଇଥିଲା। ସେ ଏକ ବିଶାଳ ମହୀରୁହରେ ପରିଣତ ହୋଇଥିଲେ। କେବଳ ବିଶାଖାପାଟଣା ନୁହେଁ, ଓଡ଼ିଶାର ପୁଅ ଓଡ଼ିଆ ଭାଷା ଓ ଓଡ଼ିଶା ମାଟିର କଲ୍ୟାଣ ପାଇଁ ସେ ସତତ ଚେଷ୍ଟିତ ଥିଲେ। ଯେତେବେଳେ ସର୍ବଭାରତୀୟ ସ୍ତରରେ ବହୁ ଅନୁଷ୍ଠାନ ଉଚ୍ଚ ପଦପଦବୀରେ ଅଧିଷ୍ଠିତ ହେବାର ସୌଭାଗ୍ୟ ଅର୍ଜନ କରିଥିଲେ। ବହୁ ଗୁରୁତ୍ୱପୂର୍ଣ୍ଣ ପରାମର୍ଶ ଭାରତ ସରକାରଙ୍କୁ ଦେବାପାଇଁ ସରକାରୀ ସ୍ତରରୁ ତାଙ୍କୁ ଆହ୍ୱାନ କରାଯାଉଥିଲା ଓ ତାହା ସେ ସୁଚାରୁ ରୂପେ ନିର୍ବାହ କରୁଥିଲେ। ସେ ଜଣେ ନିର୍ବିବାଦୀୟ ବ୍ୟକ୍ତିତ୍ୱ ଥିଲେ। ଆନ୍ଧ୍ର ଓଡ଼ିଶା ଉଭୟ ମାଟିରେ ସେ ଥିଲେ ସଶ୍ରଦ୍ଧ ମଣିଷ। ଉତ୍କଳ ମାଟି ଏଭଳି ଜଣେ ଯୋଗଜନ୍ମାଙ୍କୁ କୋଳରେ ଧାରଣ କରି ଧନ୍ୟ ହୋଇଛି।

## ଘର ପୁଅ ଘରକୁ ଫେରିଲା :

୧୯୩୧ ଖ୍ରୀଷ୍ଟାବ୍ଦ ଫେବୃୟାରୀ ୨୦ ତାରିଖ ଜୟପୁର ରାଜ୍ୟ ପାଇଁ ଏକ ସ୍ମରଣୀୟ ତାତ୍ପର୍ଯ୍ୟପୂର୍ଣ୍ଣ ଦିନ। ଏକ ଦିଗରେ ପ୍ରଜାପ୍ରିୟ ପ୍ରଜାନୁରଞ୍ଜକ ସୁଶାସକ ଏବଂ ବିକ୍ରମ ଦେବ ବର୍ମାଙ୍କ ସ୍ନେହାନୁବନ୍ଧ ୪ର୍ଥ ରାମଚନ୍ଦ୍ର ଦେବଙ୍କର ତୀର୍ଥାଟନ କାଳରେ ଇହଲୀଳା ସମ୍ବରଣ। ଅନ୍ୟପକ୍ଷରେ ଯୋଗଜନ୍ମା, ବିଦ୍ୱାନ, ବହୁମୁଖୀ ବ୍ୟକ୍ତିତ୍ୱର ଅଧିକାରୀ ବିକ୍ରମ ଦେବ ବର୍ମାଙ୍କ ସୌଭାଗ୍ୟ ରବି ଉଦୟ। ପ୍ରଜାମାନେ ୪ର୍ଥ ରାମଚନ୍ଦ୍ର ଦେବଙ୍କୁ ହରାଇବାର ମାନସିକ ସ୍ଥିତିରେ ନଥିବା ସତ୍ତ୍ୱେ ରାଜ ସିଂହାସନରେ ବିକ୍ରମ ଦେବ ବର୍ମାଙ୍କ ଶୁଭାଗମନକୁ ଆନ୍ତରିକତାର ସହ ଉଚ୍ଛ୍ୱସିତ ସ୍ୱାଗତ ଅପେକ୍ଷାରେ ଥିଲେ।

ବିଧିର ବିଧାନ ଯାହା ତାହାହିଁ ହେଲା। ୪ର୍ଥ ରାମଚନ୍ଦ୍ର ଦେବ ନିଃସନ୍ତାନ ଥିବାରୁ ବ୍ରିଟିଶ୍ ସରକାର ଜୟପୁର ରାଜ ସିଂହାସନ ପାଇଁ ବିକ୍ରମଦେବ ବର୍ମାଙ୍କୁ ଯୋଗ୍ୟତମ ବ୍ୟକ୍ତି ରୂପେ ନିର୍ବାଚନ କଲେ। ସେହି ବର୍ଷ ଜୁନ୍ ପାଞ୍ଚ ତାରିଖରେ ସରକାର ବିକ୍ରମଦେବ ବର୍ମାଙ୍କୁ ସିଂହାସନ ଆରୋହଣ ପାଇଁ ଆଦେଶ ପ୍ରଦାନ କଲେ। ଏହି ସମ୍ବାଦକୁ ସମଗ୍ର ଉତ୍କଳବାସୀ ଉଲ୍ଲାସର ସହ ସ୍ୱାଗତ କଲେ। ଓଡ଼ିଆ ରାଜନୈତିକ ସାହିତ୍ୟ ଓ ସାମାଜିକ କ୍ଷେତ୍ର ପାଇଁ ଏକ ଯୋଗ୍ୟତମ ବ୍ୟକ୍ତିଙ୍କୁ ଯୋଗ୍ୟତମ କ୍ଷେତ୍ରରେ ପାଇ ଓଡ଼ିଶା ମାଟି ଧନ୍ୟ ହେଲା। ଦୀର୍ଘଦିନ ଧରି ଓଡ଼ିଶା ମାଟିର ସୁଯୋଗ୍ୟ ସନ୍ତାନଙ୍କର ପ୍ରବାସ ରହଣିରେ ପୂର୍ଣ୍ଣଚ୍ଛେଦ ପଡ଼ିଲା। ଚାରିଆଡ଼େ ଆନନ୍ଦ କୋଳାହଳର ପରିବେଶ। ହାତୀ ସୁନାକଳସ ଢାଳିବାପରି

ବିକ୍ରମଦେବ ବର୍ମା ରାଜସିଂହାସନ ଆରୋହଣ କରିବାପାଇଁ ବିଶାଖାପାଟଣାରୁ ଜୟପୁର ସହରକୁ ଫେରିଆସିଲେ। ଜୟପୁର ସହରର ନୂଆବନ୍ଧ ତୋଟାଠାରେ ଅଗଣିତ ପ୍ରଜା ବହୁ ବିଶିଷ୍ଟ ବ୍ୟକ୍ତି ଓ ରାଜକର୍ମଚାରୀମାନେ ତାଙ୍କୁ ଉଚ୍ଛ୍ୱସିତ ଭବ୍ୟ ସମ୍ବର୍ଦ୍ଧନା ଦେଇଥିଲେ।

ଜୁନ୍ ଛଅ ତାରିଖରେ ତାଙ୍କର ପ୍ରଥମ ରାଜ ଦରବାର ବସିଥିଲା। ଏହି ଉତ୍ସବକୁ ମଧ୍ୟ ପ୍ରଜାମାନେ ମହା ଆଡ଼ମ୍ବରରେ ସଂପନ୍ନ କରିଥିଲେ। ବହୁ ଗୁଣୀ ଜ୍ଞାନୀ ପଣ୍ଡିତ ରାଜ କର୍ମଚାରୀମାନଙ୍କୁ ସମ୍ମାନ ସମ୍ବର୍ଦ୍ଧନା ଓ ପୁରସ୍କାର ଦିଆଯାଇଥିଲା। ଏହି ସଭାରେ ରାଜା କେତେକ ଗୁରୁତ୍ୱପୂର୍ଣ୍ଣ ପ୍ରତିଶ୍ରୁତି ଦେଇଥିଲେ। ରାଜକର୍ମଚାରୀ ନିଯୁକ୍ତିରେ ଶିକ୍ଷିତ ଓଡ଼ିଆଙ୍କୁ ଅଗ୍ରାଧିକାର ଭିତ୍ତିରେ ଦିଆଯିବ ବୋଲି ଘୋଷଣା କରିଥିଲେ। ଏଥି ସହ ଆଉ ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନେଇଥିଲେ। ଦୀର୍ଘ ବର୍ଷ ଧରି ପ୍ରଚଳିତ ହେଉଥିବା ରାଜାଙ୍କୁ ଭେଟିଦେବା ପ୍ରଥାକୁ ସେ ଉଚ୍ଛେଦ କରିଥିଲେ। ପ୍ରଜାମାନେ ଏହି ନିଷ୍ପତ୍ତିରେ ବେଶ୍ ଆନନ୍ଦିତ ହୋଇଥିଲେ। ଏ ଦୁଇଟି ନିଷ୍ପତ୍ତି ପରିବର୍ତ୍ତେ ସେ ଅନେକ ପ୍ରଜା ହିତକର କାର୍ଯ୍ୟ ସଂପନ୍ନ କରିଥିଲେ। ୬୨ ବର୍ଷର ଅଭିଜ୍ଞ ବିକ୍ରମ ଦେବ ବର୍ମାଙ୍କ ଯଥାର୍ଥ ମାନବବାଦୀ ବ୍ୟକ୍ତିତ୍ୱ ଅଗଣିତ ଜନତାଙ୍କ ସେବାରେ ବିନିଯୋଗ ହେବାପାଇଁ ଭାବନାମୁକ୍ତ ଆଧାରଟିଏ ପାଇଲାପରେ ସେ ନିଜ ସମସ୍ୟା ଅପେକ୍ଷା ଜନସାଧାରଣଙ୍କ ସମସ୍ୟାକୁ ସର୍ବଦା ଗୁରୁତ୍ୱାରୋପ କରୁଥିଲେ। ପରମ୍ପରା ଆଳରେ କେତେଗୁଡ଼ିଏ ପ୍ରଜାପୀଡ଼ନକାରୀ ପ୍ରଥାକୁ ଉଚ୍ଛେଦ କରିଥିଲେ। ରାଜକୋଷ ବୃଦ୍ଧି କରିବାପାଇଁ ପ୍ରଜାମାନଙ୍କ ଉପରେ ଯେଉଁ ଅନୁଚିତ କର ବସାଯାଇଥିଲା ତାର ଉଚ୍ଛେଦ କରିଥିଲେ। ରାଜନୀତିରେ ବହୁ ସଂସ୍କାର ଆଣିଥିଲେ। ରାଜା ରୂପେ ନୁହେଁ ବରଂ ଜଣେ ଗୁଣୀ ଜ୍ଞାନୀ ଓ ବିଦ୍‌ବତ୍ତା ସଂପନ୍ନ ବ୍ୟକ୍ତିତ୍ୱ ରୂପେ ସେ ଜନସାଧାରଣଙ୍କ ବେଶି ଆସ୍ଥା ଭାଜନ ହୋଇଥିଲେ। ନିଜେ ଜଣେ ସାରସ୍ୱତ ସାଧକ ହୋଇଥିବାରୁ ଶାସ୍ତ୍ରଚର୍ଚ୍ଚା, ସାହିତ୍ୟ ଆଲୋଚନା, ସାହିତ୍ୟ ପ୍ରକାଶନୀ ଦିଗରେ ଆର୍ଥିକ ସହାୟତା ଆଦି କାର୍ଯ୍ୟ ଉପରେ ସେ ଗୁରୁତ୍ୱ ପ୍ରଦାନ କରୁଥିଲେ।

ବହୁକାଳ ପରେ ଜୟପୁର ରାଜ ସିଂହାସନ ତାଙ୍କ ପରି ଜଣେ ଯୋଗ୍ୟ ଓ ସମର୍ଥ ରାଜପୁରୁଷଙ୍କ ଦ୍ୱାରା ଅଳଙ୍କୃତ ହୋଇଥିଲା। ତାଙ୍କର ଯୋଗୀସୁଲଭ ନିରାସକ୍ତ ବ୍ୟକ୍ତିତ୍ୱ, ପାଣ୍ଡିତ୍ୟ ଓ ପ୍ରତିଭା ତଥା ରାଜପଣରେ ଦକ୍ଷତା ଆଦି ଅବଲୋକନ କରି ବିଦ୍ୱାନ୍‌ମାନେ ତାଙ୍କୁ 'ରାଜର୍ଷି' ଆଖ୍ୟା ଦେଇଥିଲେ।

ପରବର୍ତ୍ତୀ ଅଧ୍ୟାୟ ମାନଙ୍କରେ ଏହି କ୍ଷଣଜନ୍ମା ବ୍ୟକ୍ତିତ୍ୱଙ୍କର ବହୁମୁଖୀ ପ୍ରତିଭା ସଂପର୍କରେ ଆଲୋଚିତ ହୋଇଛି।

# ତୃତୀୟ ଅଧ୍ୟାୟ

ବିକ୍ରମ ଦେବଙ୍କ ବହୁବିଧ ପ୍ରତିଭା

(୧) ଦେଶପ୍ରେମୀ ବିକ୍ରମ
(୨) ଦେଶ ମିଶ୍ରଣ ଆନ୍ଦୋଳନରେ ବିକ୍ରମଙ୍କ ଭୂମିକା
(୩) ପ୍ରଜାନୁରଞ୍ଜକ ରାଜା ବିକ୍ରମ
(୪) ସଂସ୍କୃତି ପୁରୁଷ ବିକ୍ରମ ବର୍ମା
(୫) ଶିକ୍ଷା, ସଂସ୍କୃତି, ସାମାଜିକ ଦାୟିତ୍ୱ

## ବିକ୍ରମଦେବଙ୍କ ବହୁବିଧ ପ୍ରତିଭା

ରାଜା ବିକ୍ରମ ଦେବ ବର୍ମା ବହୁମୁଖୀ ପ୍ରତିଭାର ଅଧିକାରୀ ଥିଲେ। ଜଣେ ଉତ୍ତମ ନାଗରିକ ଭାବରେ ସମାଜ ପ୍ରତି ତାଙ୍କର ବହୁବିଧ ଅବଦାନ ଯେପରି ସର୍ବସ୍ୱୀକୃତ ଜଣେ ସଫଳ ଶାସକ ଭାବରେ ରାଜଗାଦୀର ଯଥାର୍ଥ ଦାୟଦ ରୂପେ ସେ ସର୍ବପ୍ରସିଦ୍ଧ। ରାଜଗାଦୀ ଅଳଙ୍କୃତ କରିବା ପୂର୍ବରୁ ତାଙ୍କର ସାରସ୍ୱତ ସେବା, ଶିକ୍ଷା ଓ ସଂସ୍କୃତି ପାଇଁ ଅବଦାନ, ଉତ୍କଳର ଏକତ୍ରୀକରଣ ପାଇଁ ପଦକ୍ଷେପ, ପ୍ରବାସୀ ଓଡ଼ିଆ ମାନଙ୍କ ହିତପାଇଁ ଉଦ୍ୟମ, ବ୍ରିଟିଶ୍ ସରକାରୀ କଳକୁ ବିଭିନ୍ନ ସମୟରେ ବିଭିନ୍ନ ପରାମର୍ଶ ପ୍ରଦାନ ଆଦି ଦ୍ୱାରା ତାଙ୍କ ବ୍ୟକ୍ତିତ୍ୱ ମହିମା ମଣ୍ଡିତ ହୋଇଥିଲା। ରାଜଗାଦୀ ଅଳଂକୃତ କରିବାପରେ ଜଣେ ପ୍ରଜାନୁରଞ୍ଜକ ନ୍ୟାୟବନ୍ତ ଶାସକ ଭାବରେ ସେ ପ୍ରଜାମାନଙ୍କର ହୃଦୟ ସିଂହାସନ ଜୟ କରି ପାରିଥିଲେ। ଦୀର୍ଘ ୬୨ ବର୍ଷର ଅଭିଜ୍ଞତାକୁ ସେ ବୃଥାରେ ଯିବାକୁ ଦେଇ ନଥିଲେ। ରାଜକାର୍ଯ୍ୟ ସମ୍ଭାଳିବା ସମୟରେ ସେ ପ୍ରଜାମାନଙ୍କ ସମସ୍ୟା ସମାଧାନରେ ସେସବୁ ବିନିଯୋଗ କରିଥିଲେ। ଯଥାର୍ଥରେ ସେ ଥିଲେ ରାଜର୍ଷି। ତାଙ୍କର ପରି ସର୍ବଗୁଣ ସଂପନ୍ନ ଶାସକ ଇତିହାସରେ କ୍ୱଚିତ୍ ପରିଲକ୍ଷିତ ହୁଅନ୍ତି। ନିମ୍ନରେ ତାଙ୍କ ବ୍ୟକ୍ତିତ୍ୱର ବିଭିନ୍ନ ଦିଗ ସଂପର୍କରେ କିଞ୍ଚିତ୍ ଆଲୋକପାତ କରାଗଲା।

## ଦେଶପ୍ରେମୀ ବିକ୍ରମ:

ବିଧିବିଧାନରେ ବିକ୍ରମ ଦେବ ବର୍ମା ଆବାଲ୍ୟରୁ ପ୍ରବାସ ଜୀବନ ଯାପନ କରିଥିଲେ। ତାଙ୍କ ଜୀବନର ମହତ୍ତ୍ୱପୂର୍ଣ୍ଣ ସମୟ ମାତୃଭୂମିରେ ନୁହେଁ ପ୍ରତିବେଶୀ ରାଜ୍ୟରେ ଅତିବାହିତ ହୋଇଥିଲା। ପ୍ରତିବେଶୀ ରାଜ୍ୟରେ ଅବସ୍ଥାନ କରି ସୁଦ୍ଧା ଦେଶପ୍ରେମୀ ବିକ୍ରମ ଜନ୍ମମାଟିର ମୋହ ପରିତ୍ୟାଗ କରି ନଥିଲେ ଅଥବା ଯେଉଁ ଭୂମିରେ ସେ ଜୀବନ

ଅତିବାହିତ କରୁଥିଲେ ସେ ଭୂମି ପ୍ରତି ଅକୃତଜ୍ଞ ନଥିଲେ। ଆନ୍ଧ୍ର ଓ ଓଡ଼ିଶା ଦୁଇଟି ରାଜ୍ୟର ଭାଷା ଓ ଭାଷାଭାଷୀ ଲୋକଙ୍କ ମଧ୍ୟରେ ସମନ୍ୱୟ ସ୍ଥାପନ ପାଇଁ ସେ ଯତ୍‌ପରୋନାସ୍ତି ଉଦ୍ୟମ କରିଥିଲେ।

ବିଶାଖାପାଟଣାରେ ଶିଷ୍ଟକରଣ ସମିତିକୁ ବିସ୍ତାରିତ କରି ଓଡ଼ିଆ ସମାଜ ଗଠନ ପାଖରୁ ଉତ୍କଳ ସମ୍ମିଳନୀର ସଭାପତି ପଦ ଅଳଙ୍କୃତ ପର୍ଯ୍ୟନ୍ତ ସବୁଠି ତାଙ୍କର ମାଂତୃଭୂମି ପ୍ରତି ଥିବା ମମତ୍ୱବୋଧର ପରିଚୟ ମିଳେ। ଉତ୍କଳ ସମ୍ମିଳନୀର ଅଧିବେଶନମାନଙ୍କରେ ଯୋଗ ଦେଇ ସେ ଉତ୍କଳର ସର୍ବାଙ୍ଗୀନ ଉନ୍ନତି ପାଇଁ ସୁଚିନ୍ତିତ ପରାମର୍ଶ ଓ ପ୍ରସ୍ତାବମାନ ଦେଉଥିଲେ। ଉତ୍କଳର ଏକତ୍ରୀକରଣ, ନାରୀଶିକ୍ଷା, ସମାଜସଂସ୍କାର ଓ ଗଠନ ମୂଳକ କାର୍ଯ୍ୟଧାରା ସବୁ ଏହି ପ୍ରସ୍ତାବର ଅନ୍ତର୍ଭୁକ୍ତ ଥିଲା। ଉତ୍କଳ ସମ୍ମିଳନୀର ୧୪ ତମ ଅଧିବେଶନ ପାରଳା ଖେମୁଣ୍ଡିର ରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତିଙ୍କ ଆହ୍ୱାନରେ ବସିଥିଲା। ଅନ୍ୟତ୍ର ଅଧିବେଶନଠାରୁ ଏ ଅଧିବେଶନ ଗୁରୁତ୍ୱପୂର୍ଣ୍ଣ ଥିଲା। ଉତ୍କଳ ଗୌରବ ମଧୁସୂଦନ, ଫକୀର ମୋହନ ସେନାପତି, ପଣ୍ଡିତ ନୀଳକଣ୍ଠ ଦାସ, ଗୋପବନ୍ଧୁ ଦାଶ, ଗୋଦାବରୀଶ ମିଶ୍ରଙ୍କ ଭଳି ବହୁ ଗୁଣୀଜ୍ଞାନୀ ଓ ପଣ୍ଡିତମାନେ ଏଠାରେ ଉଦ୍‌ବୋଧନ ଦେଇଥିଲେ। ଏହି ଅଧିବେଶନରେ ସଭାପତିତ୍ୱ କରିଥିଲେ ବିକ୍ରମ ଦେବ ବର୍ମା। ପ୍ରତିବେଶୀ ରାଜ୍ୟରେ ବିଛିନ୍ନ ଭାବରେ ଥିବା ଓଡ଼ିଆଙ୍କୁ ଏକତ୍ରୀକରଣ କରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଦାବି ଏ ଅଧିବେଶନର ବିଶେଷତ୍ୱ ଥିଲା। ଏହି ଅଧିବେଶନରେ ସେ ଯେଉଁ ଅଭିଭାଷଣ ଦେଇଥିଲେ ତାହା ଶ୍ରୋତାମାନଙ୍କୁ ଅଭିଭୂତ କରିଦେଇଥିଲା। ଓଡ଼ିଶାଠାରୁ ଦୂରରେ ରହିଲେ ସୁଦ୍ଧା ସେ କାୟମନୋବାକ୍ୟରେ ଓଡ଼ିଶାର ଉନ୍ନତି ଓ ସମୃଦ୍ଧି ପାଇଁ ଉଦ୍ୟମ କରୁଥିଲେ।

କେବଳ ଓଡ଼ିଶାର ଉନ୍ନତି ନୁହେଁ ଆନ୍ଧ୍ରର ସର୍ବାଙ୍ଗୀନ ଉନ୍ନତି ପାଇଁ ତାଙ୍କର ଅବଦାନ ଅତୁଳନୀୟ। ଉତ୍କଳ ସମ୍ମିଳନୀ ଭଳି ଆନ୍ଧ୍ର ଜିଲ୍ଲା ସମ୍ମିଳନୀର ପ୍ରଥମ ଅଧିବେଶନରେ ସେ ସଭାପତିତ୍ୱ କରିଥିଲେ। ଆନ୍ଧ୍ରବାସୀଙ୍କର ବିକ୍ରମ ଦେବଙ୍କ ଉପରେ ଭରସା ଥିଲା, ତାଙ୍କୁ କେହି ଅଣ ତେଲଗୁ ବୋଲି ଭାବୁ ନଥିଲେ। ତେଲଗୁ ଭାଷାରେ ନାଟକ ଓ ନିବନ୍ଧମାନ ଲେଖି ସେ ତେଲଗୁ ଭାଷାଭାଷୀ ଲୋକଙ୍କର ଏପରି ଶ୍ରଦ୍ଧା ଭାଜନ ହୋଇପଡ଼ିଥିଲେ ଯେ ୧୯୨୩ ମସିହାରେ ତେଲଗୁ ସାହିତ୍ୟର ସର୍ବୋଚ୍ଚ ପ୍ରତିଷ୍ଠାନ ସଂସ୍ଥା ତେଲୁଗୁ ସାହିତ୍ୟ ପରିଷଦର ସଭାପତି ଦାୟିତ୍ୱ ସେମାନେ ତାଙ୍କୁ ଅର୍ପଣ କରିଥିଲେ। ଆନ୍ଧ୍ରର ବିଭିନ୍ନ ସ୍ଥାନରେ ଏହି ପରିଷଦର ଅଧିବେଶନ ହେଉଥିଲା ଓ ବିକ୍ରମ ଦେବ ବର୍ମାଙ୍କ ଓଜସ୍ୱିନୀ ଉଦ୍‌ବୋଧନ ତେଲଗୁ ଭାଷା ଭାଷୀମାନଙ୍କୁ ବେଶ୍ ଉତ୍ସାହିତ କରୁଥିଲା। ଗୋଦାବରୀ ଜିଲ୍ଲାର 'ତିନି' ଗ୍ରାମରେ ଆନ୍ଧ୍ର ସାହିତ୍ୟ ପରିଷଦର ଏକ ବକ୍ତୃତା ଆନ୍ଧ୍ର ବାସୀଙ୍କୁ ମନ୍ତ୍ରମୁଗ୍ଧ କରି ଦେଇଥିଲା।

ଆନ୍ଧ୍ର ଓ ଓଡ଼ିଶା ବାସୀଙ୍କ ମଧ୍ୟରେ ସମନ୍ୱୟ ଓ ସୁସଂପର୍କ ସ୍ଥାପନ ପାଇଁ ସେ ସତତ ଚେଷ୍ଟିତ ଥିଲେ। ୧୯୨୮ ମସିହାରେ ଆନ୍ଧ୍ର ଇତିହାସ ପରିଷଦ ଆନୁକୁଲ୍ୟରେ ପ୍ରାଚୀନ

କଳିଙ୍ଗର ରାଜଧାନୀ ମୁଖଲିଙ୍ଗମ୍ ଠାରେ କଳିଙ୍ଗ ଦିବସ ପାଳନ କରାଯାଇଥିଲା। ଏହି ଉତ୍ସବର ଅଭ୍ୟର୍ଥନା କମିଟିର ଅଧ୍ୟକ୍ଷ ଥିଲେ ବିକ୍ରମଦେବ ବର୍ମା। ଆନ୍ଧ୍ର ଓ ଉତ୍କଳର ବହୁ ଜ୍ଞାନୀଗୁଣୀ, ଐତିହାସିକ, ଗବେଷକ, ସାହିତ୍ୟିକ, ସାମ୍ବାଦିକ ଯୋଗଦାନ କରିଥିଲେ। ପଣ୍ଡିତ ନୀଳକଣ୍ଠ ଦାସ, ଶଶୀଭୂଷଣ ରଥ, ରାମମୂର୍ତ୍ତି ପାନ୍ତୁଲୁ, ସୂର୍ଯ୍ୟପ୍ରସାଦ ରାଓ, ସୀତାପତି ରାଓ, ଡଃ ଶେଷଗିରି ରାଓ ପ୍ରମୁଖ ବ୍ୟକ୍ତିତ୍ୱଙ୍କ ଦ୍ୱାରା ଏହି ଅଧିବେଶନ ଅଳଂକୃତ ହୋଇଥିଲା। ତେଲଗୁ ଭାଷାରେ ସେ ଇତିହାସ ଓ ଗବେଷଣା ସଂପର୍କରେ ଯେଉଁ ଭାବଗର୍ଭକ ଭାଷଣ ଦେଇଥିଲେ ତାହା ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ।

ଓଡ଼ିଶା ଓ ଆନ୍ଧ୍ର ଉଭୟ ସ୍ଥଳକୁ ସେ ଅତ୍ୟନ୍ତ ଭଲ ପାଉଥିଲେ। ତାଙ୍କର ଦେଶପ୍ରୀତି ଓ ମାଟିପ୍ରତି ମମତା ତାଙ୍କୁ ପରବର୍ତ୍ତୀ ପର୍ଯ୍ୟାୟରେ ଜଣେ ଉତ୍ତମ ଦକ୍ଷ ଓ ସୁଶାସକ ରୂପେ ପ୍ରତିପାଦନ କରିଥିଲା।

## ଦେଶମିଶ୍ରଣ ଆନ୍ଦୋଳନରେ ବିକ୍ରମଙ୍କ ଭୂମିକା:

ଓଡ଼ିଶାରେ ଉତ୍କଳ ସମ୍ମିଳନୀ ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି କଳ୍ପେ ଗଠନ କରାଯାଇଥିଲେ ସୁଦ୍ଧା ମୁଖ୍ୟ ଲକ୍ଷ୍ୟ ଥିଲା ଉତ୍କଳର ଏକତ୍ରୀକରଣ। ଏଥିପାଇଁ ପ୍ରାରମ୍ଭିକ ପ୍ରସ୍ତୁତି ଓଡ଼ିଶାର ଜ୍ଞାନୀଗୁଣୀ ମାନଙ୍କ ଦ୍ୱାରା ହୋଇଥିଲା। ଉତ୍କଳ ଗୌରବ ମଧୁସୂଦନ, ଗୋପବନ୍ଧୁ ଦାସ, ଫକୀର ମୋହନ ସେନାପତି, ଶଶୀଭୂଷଣ ରଥ, ଗୋଦାବରୀଶ ମହାପାତ୍ର, ନୀଳକଣ୍ଠ ଦାଶ ପ୍ରମୁଖ ଏହି ଆନ୍ଦୋଳନର ନେତୃତ୍ୱ ନେଇଥିଲେ। ବିଶାଖାପାଟଣାରେ ଅବସ୍ଥିତ ସତ୍ତ୍ୱେ ସେ ଓଡ଼ିଶା ସହ ନିୟମିତ ଯୋଗାଯୋଗ ସ୍ଥାପନ କରୁଥିଲେ ଓ ଓଡ଼ିଶାର କଲ୍ୟାଣ ନିମନ୍ତେ ସାମର୍ଥ୍ୟ ଅନୁସାରେ ସହାୟତା କରୁଥିଲେ। ପ୍ରସ୍ତାବ ପରାମର୍ଶ ଦେଉଥିଲେ। ସମ୍ବଲପୁର ଅଞ୍ଚଳରେ ଅଦାଲତରୁ ଓଡ଼ିଆ ଭାଷାକୁ ଉଠାଇ ଦିଆଯାଇଥିଲା। ଏଥିପାଇଁ ଓଡ଼ିଆ ମାନଙ୍କର ପ୍ରତିବାଦ ପ୍ରତିକ୍ରିୟାରେ ପ୍ରଶାସକ ଓଡ଼ିଆ ଭାଷାକୁ ପୁଣି ଥରେ ଅଦାଲତରେ ପ୍ରଚଳିତ କରିବା ବଙ୍ଗଳା ଛୋଟ ଲାଟ୍‌ଙ୍କ ଦ୍ୱାରା ସମ୍ଭବ ହୋଇଥିବାରୁ ତାଙ୍କୁ ସମ୍ମିଳନୀ ତରଫରୁ ଧନ୍ୟବାଦ ପ୍ରେରିତ କରିବାପାଇଁ ସେ ପ୍ରସ୍ତାବ ଦେଇଥିଲେ। ଏ ପ୍ରସଙ୍ଗରେ ସେ କହିଥିଲେ- "ଯଦି ଓଡ଼ିଆ ଭାଷା ସମ୍ବଲପୁର କଚେରୀମାନଙ୍କରୁ ଉଠି ଯାଉଥା'ନ୍ତା, ପଠନ ବିଷୟ ଈଶ୍ୱର ଜାଣନ୍ତି, ଓଡ଼ିଆ ସମ୍ଭାଷଣ ସୁଦ୍ଧା ଲୋପ ପାଇଯାଇଥାନ୍ତା। ଏ ଦୀନଦୁଃଖୀ ଉତ୍କଳବାସୀଙ୍କଠାରେ କୃପାକରି ସମ୍ବଲପୁର ପ୍ରଦେଶରେ ଓଡ଼ିଆକୁ ପୁନଶ୍ଚ ରାଜକୀୟ ଭାଷା ସ୍ୱରୂପ ସଂସ୍ଥାପନ କରିଥିବା ହେତୁ ମାନନୀୟ ଶ୍ରୀ ବଙ୍ଗଳା ଛୋଟଲାଟଙ୍କୁ ଧନ୍ୟବାଦ ଦେବା ନିମିତ୍ତ ମୁଁ ପ୍ରସ୍ତାବ କରୁଛି। ଜୟପୁର କବିଶଙ୍କର ଚିନ୍ତାମଣି ମହାନ୍ତି)

୧୯୧୪ ର ଉତ୍କଳ ସମ୍ମିଳନୀ ଅଧିବେଶନ ପୂର୍ବରୁ ଉତ୍କଳ ସମ୍ମିଳନୀର ଯେଉଁ ଅଧିବେଶନ ସବୁ ବସୁଥିଲା ସେଥିରେ ବି ପ୍ରତିବେଶୀ ରାଜ୍ୟମାନଙ୍କରେ ବିଛିନ୍ନ ଭାବରେ ଥିବା ଓଡ଼ିଆମାନଙ୍କୁ ଏକତ୍ରୀକରଣ କରିବାପାଇଁ ଦାବୀ ହେଉଥିଲା, କିନ୍ତୁ ବିକ୍ରମଦେବ ସଭାପତିତ୍ୱ କରିଥିବା ଅଧିବେଶନରେ ପ୍ରଥମ ଥର ପାଇଁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ପାଇଁ ଦାବୀ ଉପସ୍ଥାପନା କରାଯାଇଥିଲା। ଏହି ଉଦ୍ଦେଶ୍ୟରେ ସେ ଯେଉଁ ଅଭିଭାଷଣ ଦେଇଥିଲେ ସେଥିରେ ବିଛିନ୍ନ ହୋଇ ବଞ୍ଚୁଥିବା ଓଡ଼ିଆମାନେ ଜାଗ୍ରତ ହୋଇଥିଲେ ଓ ଏହି ଦାବୀ ଦୃଢତର ଭାବରେ ଇଂରେଜମାନଙ୍କ ପାଖରେ ଉପସ୍ଥାପନ କରିଥିଲେ।

"ଏହି ଦାବୀର କିଛି ଅଂଶ ପାଠକଙ୍କ ଅବଗତି ନିମନ୍ତେ ନିମ୍ନରେ ଦିଆଗଲା:-

ଆକୃତି, ପ୍ରକୃତି, ଆଚାର, ବ୍ୟବହାର, ଭାଷା, ଭାବ ଇତ୍ୟାଦି ସକଳ ବିଷୟରେ ଭାରତର ଅନ୍ୟାନ୍ୟ ଜାତିଙ୍କଠାରୁ ଓଡ଼ିଆମାନେ ପୃଥକ୍ ବୋଲି ବଡ଼ ବଡ ଶାସନ କର୍ମଚାରୀ ଏବଂ ଘଟଣା ବିଶେଷରେ ଗଭର୍ଣ୍ଣମେଣ୍ଟ ମଧ ଘୋଷଣା କରିଆସି ଅଛନ୍ତି। ଓଡ଼ିଆଙ୍କର ଏହି ପାର୍ଥକ୍ୟ ଓ ସ୍ୱାତନ୍ତ୍ୟ ରକ୍ଷା କରିବା ଗଭର୍ଣ୍ଣମେଣ୍ଟଙ୍କ କର୍ତ୍ତବ୍ୟ ନୁହେଁ କି ? ବଙ୍ଗରୁ ବିଛିନ୍ନ ରହିବା ମାତ୍ରକେ ଓଡ଼ିଆ ମାନଙ୍କର ଏହି ସ୍ୱାତନ୍ତ୍ୟ ରକ୍ଷା ବିଧାନ ସଂପୂର୍ଣ୍ଣ ହେଲା କି ? ମାନ୍ଦ୍ରାଜ ଅନ୍ତର୍ଗତ ଓଡ଼ିଶା ପ୍ରଦେଶ, କି ଜୟପୁର କି ଗଞ୍ଜାମ ଏହା ପ୍ରାକୃତିକ ଓଡ଼ିଶାର ଏକ ଅବିଚ୍ଛିନ୍ନ ଅଂଶ। ପ୍ରାୟ ସମସ୍ତ ଗଞ୍ଜାମ ଜିଲ୍ଲା ଓ ଜୟପୁର ଓଡ଼ିଆ ରାଜାମାନଙ୍କ ଦ୍ୱାରା ଅଧିକୃତ ଏବଂ ଓଡ଼ିଆ ଲୋକଙ୍କ ଦ୍ୱାରା ଅଧୁଷିତ ହେଲେ ସୁଦ୍ଧା ଦୁଃଖର ବିଷୟ, କ୍ଷମତାଶାଳୀ ତୈଲଙ୍ଗମାନଙ୍କ ପ୍ରଭାବରେ ଓଡ଼ିଆ ଶକ୍ତି ଏକାବେଳକେ ମ୍ରିୟମ୍ରାଣ ହୋଇଅଛି। ଓଡ଼ିଆ ଆଜି ମୁଣ୍ଡ ଟେକି ରହିପାରୁନାହିଁ। ବିଦ୍ୟାଳୟରେ, ଅଫିସ୍‌ରେ, ରାଜକାର୍ଯ୍ୟରେ ଓଡ଼ିଆ ଏକାପ୍ରକାର ବର୍ଜିତ। ଓଡ଼ିଆ ଛାତ୍ର ନିଜ ଜାତୀୟ ଭାଷା ଅଧ୍ୟୟନ ଓ ନିଜ ଜାତୀୟ ସାହିତ୍ୟ ଚର୍ଚ୍ଚାରୁ ବଞ୍ଚିତ। ରାଜଦ୍ୱାରରେ ଓଡ଼ିଆ ଅଚିହ୍ନିତ ଓ ଅପମାନିତ ସିଂହଭୂମିରେ ଅବସ୍ଥା ତଥୈବଚ। ଓଡ଼ିଶା ଦେଶ ଆଜି ଖଣ୍ଡ ବିଖଣ୍ଡିତ। ଏଥିରେ ଓଡ଼ିଆ କିପରି ତା'ର ପାର୍ଥକ୍ୟ ରଖିପାରିବ ?

କିନ୍ତୁ ନିଜ ଗୋଡ଼ରେ ଛିଡ଼ା ହେବାକୁ ନ ଶିଖିଲେ ବାହାରର ଯେତେ ସାହାଯ୍ୟ ଓ ଅବଲମ୍ବନ ହେଉ ନା କାହିଁକି ତାହାଦ୍ୱାରା କିଛି ହେବ ନାହିଁ। ସ୍ୱାବଲମ୍ବନଶୀଳ ବ୍ୟକ୍ତିର ନିଜେ ଭଗବାନ୍ ସହାୟ ହୁଅନ୍ତି, ପ୍ରଥମେ କୌଣସି ବିଷୟରେ ଯୋଗ୍ୟ ନ ହେଲେ ଅପରର ଦୟା ଦାକ୍ଷିଣ୍ୟ ସାହାଯ୍ୟ ଓ ସହାନୁଭୂତି କିଛି କାର୍ଯ୍ୟକାରୀ ହେବ ନାହିଁ। ଅତଏବ ଆମ୍ଭ ଜାତି ଅନ୍ୟାନ୍ୟ ଜାତିପରି ସମାସୀନାସନ ହେବାକୁ ହେଲେ ପ୍ରଥମତଃ ସେଇମାନଙ୍କ ପରି ଯୋଗ୍ୟ ହେବାକୁ ହେବ।

## ପ୍ରଜାନୁରଞ୍ଜକ ରାଜା ବିକ୍ରମ:

ବିକ୍ରମଦେବ ବର୍ମା କ୍ଷମତାଲିପ୍‌ସୁ ନଥିଲେ। ରାଜଗାଦୀ କିମ୍ବା ଉଚ୍ଚପଦପଦବୀ ପ୍ରତି ତାଙ୍କର ଆକର୍ଷଣ ନଥିଲା। ସେ କର୍ମଯୋଗୀ ଥିଲେ। କର୍ମ ହିଁ ତାଙ୍କ ଜୀବନର ମୂଳମନ୍ତ୍ର ଥିଲା। ରାଜଗାଦୀ ଆରୋହଣର ବହୁ ପୂର୍ବରୁ ଜଣେ ଜ୍ୟୋତିର୍ବିଦ୍ ତାଙ୍କ କୋଷ୍ଠୀ ଗଣନା କରି ତାଙ୍କର ରାଜଯୋଗ ଥିବାର ସୂଚନା ଦେଇଥିଲେ। କିନ୍ତୁ ବିକ୍ରମଦେବ ତାହାକୁ ପରିହାସ କରିଥିଲେ "ଯାହାର ସେପରି ଯୋଗ ଥାଏ ସେ ଶୀଘ୍ର ମରେ"। କିନ୍ତୁ ବିଧି ନିର୍ଦ୍ଦେଶ ଭିନ୍ନ ଥିଲା। ହାତୀ ସୁନାକଳସ ଢାଳିବା ପରି ବାଷଠି ବର୍ଷ ବୟସରେ ତାଙ୍କର ସୌଭାଗ୍ୟ ସୂର୍ଯ୍ୟ ଉଦୟ ହେଲେ। ୪ର୍ଥ ରାମଚନ୍ଦ୍ର ଦେବଙ୍କ ଅକାଳ ମୃତ୍ୟୁ ତାଙ୍କର ରାଜା ହେବାର ପାଇଁ ପଥ ଉନ୍ମୁକ୍ତ କରିଦେଲା।

ବିକ୍ରମଦେବଙ୍କ ପାଇଁ ରାଜସିଂହାସନ ପ୍ରାପ୍ତି ସଂପୂର୍ଣ୍ଣ ଅପ୍ରତ୍ୟାଶିତ। ତାଙ୍କର ଦୀର୍ଘ କର୍ମମୟ ଜୀବନର ଅଭିଜ୍ଞତା ତାଙ୍କର ରାଜପଦକୁ ସାର୍ଥକ ଭାବରେ ସମ୍ଭାଳିବା ପାଇଁ ସାମର୍ଥ୍ୟ ପ୍ରଦାନ କରିଥିଲା। ରାଜପଦ ସମ୍ଭାଳିବାର ପ୍ରଥମ ଦରବାରରେ ସେ ପ୍ରଜାମାନଙ୍କଠାରୁ ଦର୍ଶନୀ ବା ଭେଟି ଗ୍ରହଣ ପାଇଁ ମନା କରିଦେଇଥିଲେ। ଦର୍ଶନୀ ବା ଭେଟି ଦ୍ୱାରା ରାଜକୋଷ ବୃଦ୍ଧି କରିବା ସପକ୍ଷରେ ସେ ନଥିଲେ। ନିଜ ପ୍ରଜାମାନଙ୍କର ଆର୍ଥିକ ସ୍ୱଚ୍ଛଳତା ପାଇଁ ନିଜ ରାଜ୍ୟରେ ଆବଶ୍ୟକୀୟ ରାଜକର୍ମଚାରୀ ନିଯୁକ୍ତି କ୍ଷେତ୍ରରେ ଓଡ଼ିଆମାନଙ୍କୁ ଗୁରୁତ୍ୱ ଦିଆଯିବାର ପ୍ରତିଶ୍ରୁତି ଦେଇଥିଲେ। ଏ ଦୁଇଟି ପ୍ରତିଶ୍ରୁତିରେ ପ୍ରଜାମାନେ ଖୁସି ହୋଇ ରାଜାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦେଇଥିଲେ। ଜୟଜୟକାର କରି ରାଜାଙ୍କର ଦୀର୍ଘ ଜୀବନ କାମନା କରିଥିଲେ। ଜଣେ ସୁଶାସକ ଭାବରେ ତାଙ୍କର ରାଜପଣର ଆକଳନ କରିବାକୁ ଯାଇ ଚିନ୍ତାମଣି ମହାନ୍ତି କହନ୍ତି-ବିକ୍ରମଦେବ ସିଂହାସନ ଆରୋହଣ ପରେ- "କେତେକ ରାଜନୀତିର ସଂସ୍କାର ସାଧିତ ହେଲା, କେତେ କାର୍ଯ୍ୟର ପରିବର୍ତ୍ତନ ଘଟିଲା। କଠୋର ବ୍ୟବସ୍ଥାମାନ ସଂଯତ ହେଲା। ଅନିୟନ୍ତ୍ରିତ କାର୍ଯ୍ୟ ନିୟନ୍ତ୍ରିତ ହେଲା। ପ୍ରଜାପୀଡ଼ାଦାୟକ କେତେକ ବିଧାନ ଏକାବେଳକେ ଉଠିଗଲା। କେତେ ବିଧିବିଧାନ ଉଦ୍ଭାବିତ ହେଲା। ଏହିପରି ଗୋଟାଏ ଖଣ୍ଡ ସଂସ୍କାର ହେଲା। " (ପୃ.୧୮୨) ଜୟପୁର।

ତାଙ୍କ ସମୟରେ ପ୍ରଜାମାନଙ୍କୁ ପୂର୍ବରୁ ପରମ୍ପରା କ୍ରମେ ଗଡ଼ି ଆସୁଥିବା ଶୋଷଣ, କଷଣ ନିର୍ଯ୍ୟାତନା ଦୂର ହେଲା। ପ୍ରଜାମାନେ ବିନା ଭେଟିରେ ରାଜାଙ୍କୁ ସାକ୍ଷାତ କରି ସେମାନଙ୍କ ଆପତ୍ତି ଅଭିଯୋଗ ଶୁଣୁଥିଲେ। ଭେଟି ପ୍ରଥା ସଂପୂର୍ଣ୍ଣ ଉଚ୍ଛେଦ କରି ଦେଇଥିଲେ।

ଜୟପୁର ରାଜନଅର ମଧ୍ୟରେ କେତେକ ନବପ୍ରାସାଦ ନିର୍ମିତ ହୋଇଥିଲା। ହାତୀଶାଳ, ଘୋଡ଼ାଶାଳ ଓ ଗୋଶାଳାମାନ ନିର୍ମାଣ ସହ ପ୍ରଜାମାନଙ୍କ ମଧ୍ୟରେ ସେ ଆଧ୍ୟାତ୍ମିକ ଭାବ ପ୍ରସାର ପାଇଁ ବିଭିନ୍ନ ସ୍ଥାନରେ ମନ୍ଦିର ମାନ ନିର୍ମାଣ କରାଇଥିଲେ। ଅର୍ଥାଭାବରୁ ବ୍ୟକ୍ତିଗତ ଜୀବନରେ ଯେଉଁ ଜନହିତକର କାର୍ଯ୍ୟ କରିପାରି ନଥିଲେ,

ରାଜଗାଦୀ ଆରୋହଣ ପରେ ସେ ବିନା ଦ୍ୱିଧାରେ ପ୍ରଜାମାନଙ୍କ ହିତାର୍ଥେ ରାଜକୋଷ ଉନ୍ମୁକ୍ତ କରିଦେଲେ । ରାଜା ବିକ୍ରମଦେବ ବର୍ମାଙ୍କ ରାଜପଣକୁ ଆକଳନ କରି କବି ଶେଖର ଚିନ୍ତାମଣି କହନ୍ତି-ରାଜା ହେବା ପୂର୍ବରୁ ତାଙ୍କର ଯେଉଁସବୁ କାର୍ଯ୍ୟ ସାମାନ୍ୟ ଭାବରେ ବା ସୀମାବଦ୍ଧ ଭାବରେ ଚଳୁଥିଲା, ତାହାସବୁ ବିସ୍ତୃତ ହୋଇଉଠିଲା । ଶାସ୍ତ୍ରଚର୍ଚ୍ଚା, ପଣ୍ଡିତପ୍ରୀତି, ସାଧାରଣ ଦାନ, ଦେଶସେବା, ପରୋପକାର, ଦୀନ ଛାତ୍ରଙ୍କ ଶିକ୍ଷା ପାଇଁ ସହାୟତା, ସାହିତ୍ୟାଲୋଚନା ଏବଂ ସତ୍‌ସାହିତ୍ୟ ପ୍ରକାଶରେ ଉତ୍ସାହ ଦାନ ପ୍ରଭୃତି ତାଙ୍କ ସହଜାତ ଗୁଣ ସମୂହ ବହୁଗୁଣିତ ବଢିଉଠିଲା ।'

ଜୟପୁର ଭଳି ଏକ ବିଶାଳ ଭୂଖଣ୍ଡର ଅଧିକାରୀ ହେଲେ ସୁଦ୍ଧା ଗର୍ବ ଅହଙ୍କାର ତାଙ୍କର ସୀମା ସ୍ପର୍ଶ କରି ନଥିଲା । ସେ ନିରାଡ଼ମ୍ବର ଜୀବନ ଯାପନ କରୁଥିଲେ । ରାଜକୀୟ ବିଳାସଠାରୁ ସଂପୂର୍ଣ୍ଣ ଦୂରରେ ରହି ସେ ରାଜର୍ଷି ଜନକଙ୍କ ଭଳି ସାଦାସିଧା ଜୀବନ ଅତିବାହିତ କରୁଥିଲେ । "ବେଶଭୂଷା କଥା ତେଣେ ଥାଉ ପୋଷାକ ପରିଚ୍ଛଦରେ ମଧ ଆଡ଼ମ୍ବର ନାହିଁ । ଖଣ୍ଡିଏ ପିନ୍ଧା..., ଖଣ୍ଡିଏ ଚାଦର ଏହାହିଁ ସାଧାରଣ ପରିଧେୟ । କଦାଚିତ୍ ଖଣ୍ଡେ ସାଧାରଣ ପଞ୍ଜାବୀ ପରିଚ୍ଛଦ ରୂପେ ରାଜଶରୀର ଆଭରଣର ସୌଭାଗ୍ୟ ଲାଭ କରେ । ହାତରେ ଗୋଟିଏ ସାଦା ସୁନା ମୁଦି । ଗୋଡ଼ରେ ହଳେ ଜୟପୁର ନିର୍ମିତ ମରହଟ୍ଟୀ ଜୋତା । ବସିବା, ଚୌକୀ ମଧ ନିରାଡ଼ମ୍ବର । (ପୃ.୧୮୫) (ଜୟପୁର) । ଏହାହିଁ ଥିଲା ଜୟପୁର ରାଜ୍ୟର ବରେଣ୍ୟ ରାଜା ବିକ୍ରମଦେବ ବର୍ମାଙ୍କର ରାଜକୀୟ ପରିଚୟ ।

ବିକ୍ରମ ଦେବ ବର୍ମା ସରଳ ନିରାଡ଼ମ୍ବର ଥିଲେ ସିନା କିନ୍ତୁ ନ୍ୟାୟ ବିଚାରରେ ଅତ୍ୟନ୍ତ କଠୋର ଥିଲେ । ତାଙ୍କ ଦରବାରରେ ଧନୀ ଦରିଦ୍ର ନିର୍ବିଶେଷରେ ସମସ୍ତେ ସମାନ ନ୍ୟାୟ ପାଉଥିଲେ । ଏହି ରାଜପୁରୁଷଙ୍କ ନ୍ୟାୟବିଚାରରେ ସମସ୍ତେ ସନ୍ତୁଷ୍ଟ ଥିଲେ ।

ତାଙ୍କର ଦୀର୍ଘ କୋଡ଼ିଏ ବର୍ଷର ରାଜତ୍ୱ କାଳରେ ସେ ପ୍ରଜାମାନଙ୍କ ପାଇଁ ଯେଉଁ ଜନହିତକର କାର୍ଯ୍ୟ ସଂପନ୍ନ କରିଥିଲେ ତାହା ତାଙ୍କୁ ଇତିହାସରେ ଅମର କରି ରଖିଛି ।

ଆଦିବାସୀ ମାନଙ୍କ ବିକାଶ ପାଇଁ ସେ ବିଭିନ୍ନ ଯୋଜନାମାନ ପ୍ରଣୟନ କରିଥିଲେ । ରାଜ୍ୟରେ ପ୍ରଥମ ସଂସ୍କୃତ ବିଦ୍ୟାଳୟ ଓ ପ୍ରଥମ ଚାରୁକଳା ବିଦ୍ୟାଳୟ ସ୍ଥାପନ କରି ସେ ବୁଦ୍ଧିଜୀବୀଙ୍କ ଦ୍ୱାରା ପ୍ରଶଂସା ଭାଜନ ହୋଇଥିଲେ । ଏହାଛଡ଼ା ଚନ୍ଦନ କାଜୁ କଫି ତେଜପତ୍ର ବୃକ୍ଷରୋପଣ, ସମବାୟ ବ୍ୟାଙ୍କ୍ ସ୍ଥାପନ, ବିକ୍ରମ ପ୍ରେସ୍ ନାମରେ ରାଜ୍ୟର ପ୍ରଥମ ପ୍ରେସ୍ ସ୍ଥାପନ, ପ୍ରଜାବଣୀ ନାମକ ରାଜ୍ୟର ପ୍ରଥମ ସମ୍ବାଦପତ୍ର ପ୍ରକାଶନ ଆଦି ବହୁ ଗଠନ ମୂଳକ କାର୍ଯ୍ୟ ସଂପନ୍ନ କରିଥିଲେ । ଜୟପୁର ମୋତି ମହଲଠାରୁ ଗେଷ୍ଟ ହାଉସ୍ ପର୍ଯ୍ୟନ୍ତ ରାଜମାର୍ଗର ପ୍ରଶସ୍ତିକରଣ କରି ସେ ସହରକୁ ସୌନ୍ଦର୍ଯ୍ୟ ବୃଦ୍ଧି ଦିଗରେ ସହାୟକ ହୋଇଥିଲା । କବିଶେଖର ଚିନ୍ତାମଣି ମହାନ୍ତିଙ୍କ ଗ୍ରନ୍ଥାବଳୀ ଓ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ଭାଷାକୋଷ ପାଇଁ ପୃଷ୍ଠପୋଷକତା ତାଙ୍କର ରାଜକୀୟ ହୃଦୟବତ୍ତାର ଅନ୍ୟତମ ଉଦାହରଣ ।

ଏସବୁ ବ୍ୟତୀତ ଉତ୍କଳ ବିଶ୍ୱବିଦ୍ୟାଳୟ, କଟକ ମେଡ଼ିକାଲ କଲେଜ ଓ ପୁରୀ ଜିଲ୍ଲା ଅନ୍ତରଙ୍ଗର ପାଟଣିଦା ଏମ୍.ଇ.ସ୍କୁଲକୁ ଅର୍ଥ ସହାୟତା ତାଙ୍କ ରାଜକୀୟ ଦାନଶୀଳତାର ଅନ୍ୟତମ ଦୃଷ୍ଟାନ୍ତ।

ସେ ଜଣେ କର୍ତ୍ତବ୍ୟ ପରାୟଣ ଶାସକ ଥିଲେ। ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ପାଇଁ ସେ ସର୍ବଦା ତତ୍ପର ଥିଲେ। ତାଙ୍କର ପ୍ରତିଭା, ପାଣ୍ଡିତ୍ୟ, ବିଦ୍‌ବତ୍ତା ତାଙ୍କୁ ଜୟପୁର ରାଜବଂଶର ଇତିହାସରେ ଅନ୍ୟତମ ସ୍ଥାନ ପ୍ରଦାନ କରିଛି। ସେ ଜୟପୁର ରାଜବଂଶର ଶେଷ ରାଜା ଥିଲେ। ତାଙ୍କ ରାଜତ୍ୱକୁ ଜୟପୁର ଇତିହାସରେ ସୁବର୍ଣ୍ଣ ଯୁଗ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ।

## ସଂସ୍କୃତି ପୁରୁଷ ବିକ୍ରମ ବର୍ମା:

ବିକ୍ରମ ଦେବ ବର୍ମା ଥିଲେ ଜଣେ ସଂସ୍କୃତି ପୁରୁଷ। ଜୀବନର ମହତ୍ତ୍ୱପୂର୍ଣ୍ଣ ସମୟ ଦୁଃଖ ଦୈନ୍ୟ ଓ ଯନ୍ତ୍ରଣାରେ ପୀଡ଼ିତ ହୋଇଥିଲେ ସୁଦ୍ଧା ସେ କଳା ସଂସ୍କୃତି ସାହିତ୍ୟ ଆଦି ସାଧନାରୁ ବିଚ୍ୟୁତ ରହି ନଥିଲେ। ଯେଉଁଠାରେ କିଞ୍ଚିତ୍ ମାତ୍ର ପ୍ରତିଭାର ସ୍ଫୁରଣ ଦେଖିଛନ୍ତି, ତାର ବିକାଶ ପାଇଁ ସେ ସର୍ବାନ୍ତକରଣରେ ଉତ୍ସାହିତ କରିଛନ୍ତି। ଆନ୍ଧ୍ରରେ ଜଗନ୍ମିତ୍ର ସମାଜ ପାଇଁ ଏକ ସ୍ଥାୟୀ ରଙ୍ଗମଞ୍ଚ ଜଗନ୍ମିତ୍ର ହଲ୍ ନିମନ୍ତେ ଅର୍ଥ ରାଶି ପ୍ରଦାନ ତା'ର ଏକ ପ୍ରକୃଷ୍ଟ ଉଦାହରଣ। ସେ ନିଜେ ଜଣେ ନାଟ୍ୟକାର ଥିଲେ। ଉଭୟ ତେଲୁଗୁ ଓ ଓଡ଼ିଆ ଭାଷାରେ ନାଟକ ରଚନା ତାଙ୍କ ସାରସ୍ୱତ ସାଧନାର ଅନ୍ୟତମ ଉଦାହରଣ।

ସେ ସରସ୍ୱତୀଙ୍କର ବରପୁତ୍ର ଥିଲେ। ବିଭିନ୍ନ ସଭା ସମିତିରେ ତାଙ୍କର ଓଜସ୍ୱିନୀ ଭାଷଣ ଶ୍ରୋତୃବର୍ଗଙ୍କୁ ଚମତ୍କୃତ କରିଦେଉଥିଲା। ୧୯୧୪ ଖ୍ରୀଷ୍ଟାବ୍ଦରେ ପାରଳାଖେମୁଣ୍ଡି ଅଧିବେଶନରେ ଯେଉଁ ଅଭିଭାଷଣ ଦେଇଥିଲେ ସେଥିରୁ ଓଡ଼ିଆ ଭାଷା, ଓଡ଼ିଆ ଜାତି, ଓଡ଼ିଶାର ଐତିହ୍ୟରେ ତାଙ୍କର ଗଭୀର ଜ୍ଞାନର ପରିଚୟ ମିଳେ। ତାଙ୍କର ଭାଷଣ ଓ ନିବନ୍ଧ ମାନଙ୍କରେ ସେ ସର୍ବଦା ସମାଜ ସଂସ୍କାର ପାଇଁ ବ୍ୟାକୁଳ ଥିଲେ। ସମାଜ ସଂସ୍କାର ସଂପର୍କରେ ତାଙ୍କର ଉଚ୍ଚ ବିଚାର ନିଦର୍ଶନ ପାଇଁ ତାଙ୍କ ଉତ୍କଳ ସମ୍ମିଳନୀର ଅଭିଭାଷଣର କିୟଦଂଶ ଦ୍ରଷ୍ଟବ୍ୟ। "ଜାତିର ଯାହା ସମ୍ବଳ ତାହା ଛାଡ଼ିଦେଇ କେବଳ ଅନୁକରଣର ପଶ୍ଚାଦ୍ଧାବକ କଲେ କିଛି ଫଳ ହେବ ନାହିଁ। ଏହାଦ୍ୱାରା ମୁଁ ପ୍ରକାଶ କରୁନାହିଁ ଯେ ଆମ୍ଭମାନଙ୍କ ସମାଜରେ କୌଣସି ତ୍ରୁଟି ବା ଦୋଷ ନାହିଁ। କେଉଁ ସମାଜରେ ବା ତାହା ନାହିଁ ? ଆମ୍ଭମାନଙ୍କ ସମାଜ ପରି ପ୍ରାଚୀନ ସମାଜ ନାନା ଅବସ୍ଥା ଅତିକ୍ରମ କରି ଆସିଥିବାରୁ କାଳକ୍ରମେ ତହିଁରେ ସେପରି ଅନେକ ତ୍ରୁଟି ବା କୁସଂସ୍କାର ପ୍ରବେଶ କରିବା ସ୍ୱାଭାବିକ। ସେ ସବୁର ନିରାକରଣ ସର୍ବଦା ବାଞ୍ଛନୀୟ। କିନ୍ତୁ ତାହା କରିବାବେଳେ ଶନୈଃ ପନ୍ଥା ଶନୈ ପନ୍ଥା ଶନୈ ପର୍ବତ 'ଲଙ୍ଘନଂ" ନୀତି ଅବଲମ୍ବନ କରିବା ଶ୍ରେୟସ୍କର।"

ଆନ୍ଧ୍ର ଇତିହାସ ଗବେଷଣା ପରିଷଦ ଅଭ୍ୟର୍ଥନା କମିଟିର ଅଧ୍ୟକ୍ଷ ଭାବରେ ୧୯୨୮ ମସିହାରେ ମୁଖଲିଙ୍ଗମ୍ ଅଧିବେଶନରେ ତାଙ୍କର ସାରଗର୍ଭକ ଭାଷଣ ଐତିହାସିକ ଓ ଗବେଷକମାନଙ୍କ ପାଇଁ ଏକାନ୍ତ ଉପାଦେୟ ଥିଲା।

ବିକ୍ରମଦେବ ବର୍ମାଙ୍କ ପାଣ୍ଡିତ୍ୟ ପ୍ରତିଭା ମୂଲ୍ୟାଙ୍କନ କରି ଆନ୍ଧ୍ର ଭାରତୀ ତୀର୍ଥ ତାଙ୍କୁ ସାହିତ୍ୟ ସମ୍ରାଟ: Lord of Letters ଉପାଧିରେ ଭୂଷିତ କରିଥିଲେ। ଆନ୍ଧ୍ର ବିଶ୍ୱବିଦ୍ୟାଳୟ ତାଙ୍କୁ କଳାପ୍ରପୂର୍ଣ୍ଣା Lord of Letters ଉପାଧିରେ ଭୂଷିତ କରିଥିଲେ। ଉତ୍କଳ ବିଶ୍ୱବିଦ୍ୟାଳୟ ମଧ୍ୟ ତାଙ୍କୁ ଡି. ଲିଟ୍. ଉପାଧି ପ୍ରଦାନ କରିଥିଲେ।

ବିଶାଖାପାଟଣାରେ ଅବସ୍ଥିତ ଜୟପୁର କଲେଜ୍ ଅଫ୍ ସାଇନ୍ସ ଆଣ୍ଡ ଟେକ୍ନୋଲେଜି ସମ୍ମୁଖରେ ବିକ୍ରମଦେବ ବର୍ମାଙ୍କ ପ୍ରତିମୂର୍ତ୍ତି ଉନ୍ମୋଚନ ଅବସରରେ ସରୋଜିନୀ ନାଇଡୁ ତାଙ୍କୁ ରାଜର୍ଷି ବୋଲି ସମ୍ବୋଧନ କରିଥିଲେ। କବି ଶେଖର ଚିନ୍ତାମଣି ମହାନ୍ତି ତାଙ୍କୁ ଉତ୍କଳର ବିକ୍ରମାଦିତ୍ୟ ବୋଲି କହିଥିଲେ। ତାଙ୍କ ଭାଷାରେ ମହାରାଜା ଶ୍ରୀ ବିକ୍ରମ ଦେବବର୍ମା ସରସ୍ୱତୀଙ୍କର ବରପୁତ୍ର। ପୁଣି କମଳା ମାତାଙ୍କର ଅଙ୍କ ମଣ୍ଡନ କରିଛନ୍ତି। ଉଭୟ ମାତାଙ୍କ ଠାରୁ ସେ ଦୁଇଟି ରାଜ୍ୟ ପ୍ରାପ୍ତି ହୋଇଛନ୍ତି। ଗୋଟିଏ ଜୟପୁର ରାଜ୍ୟ, ଅନ୍ୟଟି ସାରସ୍ୱତ ରାଜ୍ୟ, ଗୋଟିଏ ପାର୍ଥିବ, ଅନ୍ୟଟି ଜ୍ୟୋତିର୍ମୟ ଶାଶ୍ୱତ ରାଜ୍ୟ, ତାଙ୍କ ମୃତ୍ତିକା ରାଜ୍ୟ ପରି ସାରସ୍ୱତ ରାଜ୍ୟ ମଧ୍ୟ ବିପୁଳ ବିସ୍ତୃତ। ସାହିତ୍ୟ ସାଧନାର କ୍ଷେତ୍ର ସୀମାତୀତ ନ ହେଲେ ହେଁ ବିରାଟ। ଦୁଇ ମାତାଙ୍କଠାରୁ ସମାନ ଭାବରେ ସ୍ନେହ ଲାଭ କରି ସେ ଲକ୍ଷ୍ମୀ ସରସ୍ୱତୀଙ୍କ ବିରୋଧ ଅପବାଦରେ ବ୍ୟର୍ଥତା ସପ୍ରମାଣ କରିଅଛନ୍ତି। ସେ ଉତ୍କଳର ବିକ୍ରମାଦିତ୍ୟ। (ଚିନ୍ତାମଣି ମହାନ୍ତି, ଜୟପୁର, ପୃ.୧୮୭)

ବିକ୍ରମ ଦେବ ବର୍ମା ଏକାଧାରାରେ ଓଡ଼ିଆ ତେଲୁଗୁ ଓ ସଂସ୍କୃତ ଭାଷାରେ ବ୍ୟୁତ୍ପତ୍ତି ଲାଭ କରିଥିଲେ। ତାଙ୍କ ଜୀବନୀ ଓ ପ୍ରତିଭା ସଂପର୍କରେ ଆଲୋଚନା କରି ବିଶିଷ୍ଟ ଗବେଷକ ଏ.ଭି.ଡି. ଶର୍ମା ତାଙ୍କର Intigration of Andhra and Odisha culture ବହିରେ ଲେଖିଛନ୍ତି- "He distinguished himself by untue of his talents and dis service to Andhra and Orissa in the literary socio-cultural and Educational field. He was a poet, scholar and play writer in Sanskrit Telugu and Oriya."

ଜ୍ୟୋତିଷ ଶାସ୍ତ୍ରରେ ବିକ୍ରମ ଦେବ ବର୍ମାଙ୍କର ଯଥେଷ୍ଟ ପାରଦର୍ଶିତା ଥିଲା। ବେଦାନ୍ତ ଦର୍ଶନ, ନ୍ୟାୟ ଦର୍ଶନରେ ମଧ୍ୟ ତାଙ୍କର ଗଭୀର ଅବଗାହନ ଥିଲା। ସେହି ହେତୁ ତାଙ୍କୁ ଆକଳନ କରି ଚିନ୍ତାମଣି ମହାନ୍ତି କହନ୍ତି-ମହାରାଜ ଶ୍ରୀ ବିକ୍ରମ ଦେବ ବର୍ମା ବହୁମୂର୍ତ୍ତିଧାରୀ। ସେ କେତେବେଳେ ସଂସାରୀ, କେତେବେଳେ ଯୋଗୀ, କେତେବେଳେ ପଣ୍ଡିତ, କେତେବେଳେ କବି, କେତେବେଳେ ଐତିହାସିକ, କେବେ ଜ୍ୟୋତିର୍ବିଦ୍, କେବେ

ସଂସ୍କାରକ, କେବେ ପୌରାଣିକ, କେବେ ଆଳଙ୍କାରିକ, କେବେ ବୈଦାନ୍ତିକ, କେବେ ବା ନୈୟାୟିକ। (ଚିନ୍ତାମଣି ମହାନ୍ତି, ଜୟପୁର, ପୃ.୨୨୪)

## ସାହିତ୍ୟ

ସାର୍ଥକ ବ୍ୟକ୍ତିତ୍ୱ ବିକ୍ରମ ବର୍ମା ବହୁବିଧ ପ୍ରତିଭାର ଅଧିକାରୀ। ରାଜ କାର୍ଯ୍ୟରେ ସେ ଯେପରି ଜଣେ ସୁଦକ୍ଷ ଶାସକ, ସାରସ୍ୱତ କ୍ଷେତ୍ରରେ ମଧ୍ୟ ସେ ଜଣେ ସଫଳ ସରସ୍ୱତୀ। ସାହିତ୍ୟ ସାଧନା ଦ୍ୱାରା ଦେଶ ସମୃଦ୍ଧ ମାର୍ଜିତ ସଂସ୍କାର ସିଦ୍ଧ ହୁଏ ବୋଲି ତାଙ୍କର ବିଶ୍ୱାସ ଥିଲା। ସେ କହୁଥିଲେ- "ସର୍ବତ୍ର ସର୍ବ ସମୟରେ ସାହିତ୍ୟିକମାନେ କବି ଓ ଲେଖକଗଣ ଜାତିର ନେତା ହୋଇଥା'ନ୍ତି। ଅର୍ଥାତ୍ ମନ ଯେପରି ଶରୀରକୁ ଚାଳନ କରେ ପ୍ରତିଭାଶାଳୀ ସାହିତ୍ୟିକମାନେ ସେହିପରି ଜାତିକୁ ଚାଳନ କରିଥା'ନ୍ତି। ଆମ୍ଭମାନଙ୍କର ଏହି ମାନସିକ ଉନ୍ନତି ପାଇଁ ଜାତୀୟ ସାହିତ୍ୟର ଅଭିବୃଦ୍ଧି ନିମନ୍ତେ ବିଶେଷ ଭାବରେ ଯତ୍ନ କରିବା ନିତାନ୍ତ ଆବଶ୍ୟକ ବୋଲି ମୁଁ ମନେ କରେ। (ପୃ.୫୧) (ରାଜକବି ବିକ୍ରମଦେବ ବର୍ମା, ରାଧାଚରଣ ପଣ୍ଡା)

ବିକ୍ରମ ଦେବ ବର୍ମାଙ୍କ ଆନୁଷ୍ଠାନିକ ଶିକ୍ଷାଗତ ଯୋଗ୍ୟତା ବେଶି ନଥିଲା। କିନ୍ତୁ ଗଭୀର ଅଧ୍ୟବସାୟ, ସାଧନା ବଳରେ ତାଙ୍କର ବିଭୂଦତ୍ତ ପ୍ରତିଭାର ସଦୁପଯୋଗ କରିବାରେ ସେ ସମର୍ଥ ହୋଇଥିଲେ। ଓଡ଼ିଆ ତେଲୁଗୁ ଓ ସଂସ୍କୃତ ଭାଷାରେ ସେ ପାଣ୍ଡିତ୍ୟପୂର୍ଣ୍ଣ ସାହିତ୍ୟ ସୃଷ୍ଟି କରି ଯାଇଛନ୍ତି। କେବଳ ସୃଜନଶୀଳ ସାହିତ୍ୟ ନୁହେଁ ବ୍ୟାକରଣରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା। ଓଡ଼ିଶା ଓ ଆନ୍ଧ୍ରରୁ ପ୍ରକାଶିତ ମାସିକ ପାକ୍ଷିକ ଦୈନିକ ପତ୍ରିକାମାନଙ୍କରେ ତାଙ୍କର ସୃଜନଶୀଳ ସାହିତ୍ୟମାନ ପ୍ରକାଶିତ ହେଉଥିଲା। ଉତ୍କଳ ସାହିତ୍ୟ, ମୁକୁର, ପ୍ରଦୀପ ପ୍ରଭୃତି ଓଡ଼ିଆ ପତ୍ରିକା ସହ ଆନ୍ଧ୍ରରୁ ପ୍ରକାଶିତ ଭାରତୀ, ସରସ୍ୱତୀ, ଗଜଲକ୍ଷ୍ମୀ, ବାର୍ଷିକ ପତ୍ରିକା ମାନଙ୍କର ତାଙ୍କର ତେଲୁଗୁ ପ୍ରବନ୍ଧ ଆଦି ପ୍ରକାଶିତ ହେଉଥିଲା। ବିକ୍ରମ ଦେବଙ୍କର ବିଶେଷତ୍ୱ ଏହି ଯେ, ସେ ସ୍ୱରଚିତ ସାହିତ୍ୟ ଅପେକ୍ଷା ଅନ୍ୟ ସାହିତ୍ୟିକଙ୍କର ପାଣ୍ଡୁଲିପି ସଂଶୋଧନ ଓ ଅନ୍ୟ କବିମାନଙ୍କ କାବ୍ୟ କବିତା ଉପରେ ବହୁ ବିସ୍ତୃତ ଟୀକା ଟୀପ୍ପଣୀ ଲେଖିବାରେ ବହୁ ସମୟ ଅତିବାହିତ କରୁଥିଲେ। ଅନ୍ୟମାନଙ୍କ ସାରସ୍ୱତ ସୃଷ୍ଟିକୁ ମର୍ଯ୍ୟାଦା ଦେବାର ନ୍ୟୁନତମ ସୁଯୋଗ ଟିକକ ସେ ହାତଛଡ଼ା କରନ୍ତି ନାହିଁ। ଉପେନ୍ଦ୍ର ଭଞ୍ଜ, ଗୋପାଳ କୃଷ୍ଣ, କବିସୂର୍ଯ୍ୟ ବଳଦେବ ରଥ ପ୍ରଭୃତି ବହୁ କବିମାନଙ୍କର କାବ୍ୟ କବିତାକୁ ନେଇ ସାମୟିକ ଚର୍ଚ୍ଚା କରୁଥିଲେ। ସେମାନଙ୍କ କାବ୍ୟ କବିତାର ବହୁ ପଂକ୍ତି ସେ ବିନା ପୁସ୍ତକରେ ଆବୃତ୍ତି କରିପାରନ୍ତି। ବହୁ ପ୍ରାଚୀନ ଛାନ୍ଦ ଚୌପଦୀ ଗୁଡ଼ିକୁ ସେ ଯେଉଁଭଳି ଭାବରେ ମନେ ରଖିଥିଲେ ସେଥିରୁ ତାଙ୍କର ପ୍ରଖର ସ୍ମରଣଶକ୍ତିର ପରିଚୟ ମିଳେ। ତେଲୁଗୁ ସାହିତ୍ୟରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା।

ପ୍ରାଚୀନ ଓ ସମସାମୟିକ ବହୁ ତେଲୁଗୁ କାବ୍ୟ କବିତା ସେ ନିଜେ ସୁନ୍ଦର ଭାବରେ ଆବୃତ୍ତି ଓ ଚର୍ଚ୍ଚା ଆଲୋଚନା କରିପାରୁଥିଲେ। କବିର, ହରିଦାସ, ତୁଳସୀ ଦାସ ଆଦିଙ୍କର ସଂଗୀତ ଓ ଭଜନ ଗୁଡ଼ିକୁ ସେ ସଂପୂର୍ଣ୍ଣ ଆୟତ୍ତ କରିପାରିଥିଲେ। ରାଜ୍ୟ ତଥା ରାଜ୍ୟ ବାହାରର ବହୁ କବି ସାହିତ୍ୟିକମାନେ ତାଙ୍କର ପ୍ରତ୍ୟକ୍ଷ ଓ ପରୋକ୍ଷ ସହାୟତାରେ ଉପକୃତ ହୋଇଛନ୍ତି। ସାହିତ୍ୟିକ ମାନଙ୍କୁ ଉତ୍ସାହିତ କରିବାରେ ସେ ଅଦମ୍ୟ ଆନନ୍ଦ ଅନୁଭବ କରୁଥିଲେ। ବହୁ ସାହିତ୍ୟିକଙ୍କ ପାଣ୍ଡୁଲିପି ପ୍ରକାଶ ପାଇଁ ସେ ଅର୍ଥରାଶି ପ୍ରଦାନ କରୁଥିଲେ।

ଯୌବନାବସ୍ଥାରେ ସେ ଅତ୍ୟନ୍ତ ନାଟକପ୍ରିୟ ଥିଲେ। ୧୮୯୭ ଖ୍ରୀଷ୍ଟାବ୍ଦରେ ତାଙ୍କୁ ଯେତେବେଳେ ୨୮ ବର୍ଷ ହୋଇଥିଲା ସେ ତାଙ୍କର ପ୍ରଥମ ରଚନା ସଂଗୀତ ଶ୍ରୀ ରାଧାମାଧବ ରଚନା କରିଥିଲେ। ଏହା ତାଙ୍କର ପ୍ରଥମ ଓଡ଼ିଆ ନାଟକ ଥିଲା। ତାଙ୍କର ଆଦ୍ୟ ଯୌବନରେ ସେ ନବାକ୍ଷରୀ ଛନ୍ଦରେ ଭଗବଦ୍ ଗୀତା ମହାତ୍ମ୍ୟ ପୁସ୍ତକ ରଚନା କରିଥିଲେ। କବି ବୈଷ୍ଣବ ଧର୍ମାବଲମ୍ବୀ ଥିଲେ। ତାଙ୍କର ଆରାଧ୍ୟ ଦେବତା ରାଧାକୃଷ୍ଣଙ୍କ ପ୍ରେମ ସଂପର୍କୀୟ କାବ୍ୟ ନାଟକ ଲେଖିବାରେ ସେ ସ୍ୱତଃ ପ୍ରବୃତ୍ତ ହୋଇଥିଲେ। ତେଲୁଗୁ ଭାଷାରେ ସେ ତିନିଖଣ୍ଡ ନାଟକ ଲେଖି ଆନ୍ଧ୍ର ପ୍ରଦେଶରେ ବହୁ ଚର୍ଚ୍ଚିତ ହୋଇଥିଲେ। ସେଗୁଡ଼ିକ ହେଲା ଶ୍ରୀନିବାସ କଲ୍ୟାଣ ନାଟକ, କୃଷ୍ଣାର୍ଜୁନ ଚରିତମ୍ ଏବଂ ମାନବତୀ ଚରିତଂ, ଏହାର ସାହିତ୍ୟିକ ମାନ ଦୃଷ୍ଟିରୁ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର ଆଇ.ଏ.ବି.ଏ. ଓ ଏମ୍.ଏ. କ୍ଲାସରେ ନାଟକ ଗୁଡ଼ିକ ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ଥିଲା।

ଏସବୁ ବ୍ୟତୀତ ତାଙ୍କର ବହୁ କାବ୍ୟ କବିତା କ୍ଷୁଦ୍ରଗଳ୍ପ ପ୍ରବନ୍ଧ ବ୍ୟାକରଣ ଚର୍ଚ୍ଚା ଆଦି ରହିଛି। ପର୍ଯ୍ୟାୟ କ୍ରମେ ସେସବୁର ବିସ୍ତୃତ ଆଲୋଚନା ହେବ।

## ଉତ୍କଳ ସମ୍ମିଳନୀ ଓ ବିକ୍ରମ ଦେବ:

ଶ୍ରୀ ବିକ୍ରମଦେବ ବର୍ମାଙ୍କର ଉଚ୍ଚ ବିଚାରଧାରା, ଦେଶର ସମସ୍ୟା ପର୍ଯ୍ୟବେକ୍ଷଣରେ ତାଙ୍କର ସମ୍ବେଦନଶୀଳ ଦୃଷ୍ଟିକୋଣ ଓ ସମସ୍ୟା ସଙ୍କଟର ସମାଧାନ କରିବା ଦିଗରେ ସମୟୋପଯୋଗୀ ପରାମର୍ଶ ଦେବାରେ ତାଙ୍କର ଦକ୍ଷତା ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନରେ ତାଙ୍କ ସଭାପତୀୟ ଅଭିଭାଷଣରେ ପ୍ରତିଫଳିତ ହୋଇଥିଲା। ଦେଶର ବିଭିନ୍ନ ସମସ୍ୟା ଉପରେ ତାଙ୍କର ଚିନ୍ତନଶୀଳ ବକ୍ତବ୍ୟ ବହୁ ଚିନ୍ତାନାୟକଙ୍କୁ ଅଭିଭୂତ କରି ନେଇଥିଲା।

ପ୍ରଥମେ ୧୯୧୪ ମସିହାର ସେହି ଗୁରୁତ୍ୱପୂର୍ଣ୍ଣ ଅଧିବେଶନରେ ତାଙ୍କୁ କାହିଁକି ସଭାପତି ପଦ ଦିଆଗଲା ସେ ସଂପର୍କରେ ଯେଉଁ ନିଛକ ବାସ୍ତବ ଓ ଯୁଗୋପଯୋଗୀ କାରଣ ଦର୍ଶାଇଥିଲେ ତାହା ଥିଲା ଏହିପରି- "ଦେଶର ଅନେକ ଯୋଗ୍ୟତର ଓ ପ୍ରବୀଣ ବ୍ୟକ୍ତି ଥାଉଁ ଥାଉଁ ମୋତେ କାହିଁକି ନିର୍ବାଚନ କଲେ ଏହାର କାରଣ ମନ ମଧ୍ୟରେ

ଖୋଜିବାକୁ ବସିଲି। ବୁଝିଲି ଅଭ୍ୟର୍ଥନା ସମିତି ଏ ଗୌରବ ମତେ ଦେଇନାହାଁନ୍ତି। ଯେଉଁଠି ଓଡ଼ିଆ ଜାତି ଜୟପୁର ଓ ବିଶାଖାପାଟଣାରେ ନିଜର ବ୍ୟକ୍ତିତ୍ୱ, ନିଜର ମାତୃଭାଷା ପର୍ଯ୍ୟନ୍ତ ଭୂଲିଯିବାକୁ କାଳକ୍ରମେ ଏବଂ ଅବସ୍ଥାର ବିପର୍ଯ୍ୟୟରେ ବାଧ୍ୟ ହୋଇଛନ୍ତି, ସେମାନଙ୍କ ସଂଜ୍ଞାପ୍ରାପ୍ତି ନିମିତ୍ତ ମାତୃ ସ୍ତନ୍ୟପାନରୁ ବଞ୍ଚିତ ପ୍ରାୟ ମାତୃଭାଷାର ଅନବରତ ଚର୍ଚ୍ଚାରୁ ବିରତ ମୋ ପରି ତାଙ୍କର ଜଣେ ଦୁର୍ବଳ ପ୍ରତିନିଧିଙ୍କୁ ସଭାପତି ନିର୍ବାଚନ କରିଛନ୍ତି।"

ଉତ୍କଳ ସମ୍ମିଳନୀରେ ସଭାପତି ରୂପେ ସେ ଯେଉଁ ଅଭିଭାଷଣ ଦେଇଥିଲେ ତାହା ଓଡ଼ିଆ ସାରସ୍ୱତ ଭଣ୍ଡାରର ଅମୂଲ୍ୟ ସଂପଦ।

ଉତ୍କଳ ସମ୍ମିଳନୀ ସଭାକାର୍ଯ୍ୟ ଆରମ୍ଭ ପୂର୍ବରୁ ଶୋକ ପ୍ରସ୍ତାବଟିଏ ଆଗତ ହୋଇଥିଲା। ଏଥିରେ ସେ ମଞ୍ଜୁଷାର ରାଜା ବାସୁଦେବ ରାଜମଣି ଦେବ, ଓଡ଼ିଆ ଭାଷା ଓ ସାହିତ୍ୟର ଏକ ଶୋଚନୀୟ ସଂକଟବେଳେ ଦେବଦୂତ ରୂପେ ଆବିର୍ଭାବ ହୋଇଥିବା ରେଭେନ୍‌ସା ସାହେବ ଓ ଜଣେ ସୁଶାସକ ଭାବରେ ସର୍ବଭାରତୀୟ ସ୍ତରରେ ସୁନାମ ଅର୍ଜନ କରିଥିବା ଲର୍ଡ୍ ହାର୍ଡ଼ିଞ୍ଜଙ୍କର ପତ୍ନୀ ଏବଂ ପୁତ୍ରଙ୍କର ଦେହାନ୍ତ ନିମିତ୍ତ ସେ ଶୋକପ୍ରସ୍ତାବ ଆଗତ କରିଥିଲେ।

ରାଜା ବାସୁଦେବ ରାଜମଣିଙ୍କର ବହୁବିଧ ବ୍ୟକ୍ତିତ୍ୱକୁ ଉପରେ ମନ୍ତବ୍ୟ ପ୍ରଦାନ କରି ତାଙ୍କ ସାହିତ୍ୟିକ ପ୍ରତିଭାକୁ ଭୂୟସୀ ପ୍ରଶଂସା କରିଥିଲେ। ମଞ୍ଜୁଷାର ବିଶ୍ୱକୋଷ (Encyclopaedia) ବୋଲି ଖ୍ୟାତି ପାଇଥିବା ଜଣେ ବିଶିଷ୍ଟ କୃତୀ ସନ୍ତାନଙ୍କୁ ହରାଇ ଉତ୍କଳ ମାତାଙ୍କର ବଦନ ବିଷଣ୍ଣ ମଳିନ ହୋଇଛି ବୋଲି ସେ ଶୋକବିହ୍ୱଳ ହୋଇ କହିଥିଲେ।

ସେହିପରି ରେଭେନ୍‌ସା କଲେଜର ପ୍ରତିଷ୍ଠାତା ତଥା ଓଡ଼ିଆ ମାନଙ୍କର ଅସ୍ମିତା ସୁରକ୍ଷାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିବା ରେଭେନ୍‌ସା ସାହେବଙ୍କ ବିୟୋଗରେ ସେ ଯେଉଁ ଶୋକବାର୍ତ୍ତା ଗଠନ କରିଥିଲେ ତାହା ବେଶ୍ ମନସ୍ପର୍ଶୀ ଥିଲା। ତାଙ୍କ ଭାଷାରେ "ତାଙ୍କ ନିଜକୃତ ସ୍ମୃତିଚିହ୍ନ ଅପେକ୍ଷା ଓଡ଼ିଆମାନେ ଉନ୍ନତତର ସ୍ମୃତିର ବ୍ୟବସ୍ଥା କରିବା ସମ୍ଭବପର ନୁହେଁ। ସ୍ୱଚ୍ଛ ଏବଂ ପବିତ୍ର ହୃଦୟରେ ସରଳ ଭକ୍ତିବ୍ୟଞ୍ଜକ କୌଣସି ଉପାୟରେ ସମ୍ମିଳିତ ସମଗ୍ର ଓଡ଼ିଆ ଜାତି ଏକ ସମୟରେ ତାଙ୍କ ପ୍ରତି ଆନ୍ତରିକ ସ୍ନେହ ଓ କୃତଜ୍ଞତା ଦେଖାଇପାରିଲେ ଓଡ଼ିଆମାନେ ନିଜକୁ ଧନ୍ୟ ଓ କୃତାର୍ଥ ମନେ କରନ୍ତେ। ତାହାର ଅଭାବରେ ଆମ୍ଭେମାନେ ବର୍ତ୍ତମାନ ସେହି ସମୂହ ଭକ୍ତିର ସୂଚନା ଏହି ସମ୍ମିଳନୀରେ ଦେଖାଇବାକୁ ବସିଅଛୁ। ସମ୍ମିଳନୀରେ ରାଜନୈତିକ ଓଡ଼ିଶାର ଜଣେ ବନ୍ଧୁଙ୍କ ବିୟୋଗରେ ଦୁଃଖ ପ୍ରକାଶ କରା ହେଉଅଛି। ଏଥିରୁ ସ୍ପଷ୍ଟ ହେଉଛି ଯେ, ଓଡ଼ିଆର ଜାତୀୟ ପ୍ରାଣ ଅଖଣ୍ଡ ଓ ଅବିଚ୍ଛିନ୍ନ। ଯେ କୌଣସି ଅଞ୍ଚଳର ସୁଖ ଦୁଃଖରେ ସମଗ୍ର ଓଡ଼ିଆ ଜାତି ସୁଖ ଦୁଃଖ ଅନୁଭବ କରୁଅଛନ୍ତି। ଓଡ଼ିଆ ହୃଦୟରେ ଏହି ସ୍ୱାଭାବିକ ଅନୁଭୂତି ବିରୁଦ୍ଧରେ

ଶାସନ ଭେଦ ନୀତି ସୁଦ୍ଧା ଅନ୍ତରାୟ ହୋଇ ଛିଡ଼ା ହୋଇ ରହିପାରୁ ନାହିଁ ଏହା ଚିହ୍ନି ରଖିବା ଦରକାର।"

ଏହା ଛଡ଼ା ହାର୍ଡ଼ିଞ୍ଜ ସାହେବଙ୍କର ପତ୍ନୀ ଓ ପୁତ୍ରଙ୍କ ନିଧନରେ ସେ ମଧ୍ୟ ସମ୍ମିଳନୀ ତରଫରୁ ଶୋକପ୍ରସ୍ତାବ ରଖିବା ସଙ୍ଗେ ସଙ୍ଗେ ଭଗବାନ ତାଙ୍କ ଶୋକ ସନ୍ତପ୍ତ ପରିବାରଙ୍କୁ ଶାନ୍ତିବାରି ବର୍ଷଣ କରନ୍ତୁ ବୋଲି କାମନା କରିଥିଲେ।

ଉତ୍କଳ ସମ୍ମିଳନୀର ମୁଖ୍ୟ ଉଦ୍ଦେଶ୍ୟ ଦେଶ ମିଶ୍ରଣ ପ୍ରସଙ୍ଗରେ ତାଙ୍କ ଅଭିଭାଷଣ ମାଧ୍ୟମରେ ସେ ଯେଉଁ ଉଦ୍‌ବୋଧନ ଦେଇଥିଲେ ତାହା ଅତ୍ୟନ୍ତ ମର୍ମସ୍ପର୍ଶୀ।

"ବର୍ତ୍ତମାନ ଓଡ଼ିଆ ପାଲିଙ୍କି ବାହକ ହୋଇପାରେ କିନ୍ତୁ ତାହାର ପୂର୍ବ ପୁରୁଷମାନେ ତ ପାଲିଙ୍କି ପରିବର୍ତ୍ତେ ଦେଉଳର ଯେଉଁସବୁ ପ୍ରସ୍ତର ଉତ୍ତୋଳନ କରିପାରିଅଛନ୍ତି, ତାହା ଦେଖି ଆଧୁନିକ ଯୁଗ ମଧ୍ୟ ଆଶ୍ଚର୍ଯ୍ୟରେ ଅବାକ୍ ହେଉଅଛି। ସେହି ଓଡ଼ିଆଙ୍କର ବଂଶଧର ବୋଲି ପରିଚୟ ଦେବାକୁ ଲଜ୍ଜା କାହିଁକି? ଆମ୍ଭମାନଙ୍କୁ ଗଭର୍ଣ୍ଣମେଣ୍ଟଙ୍କ ଦ୍ୱାରସ୍ଥ ହେବା ସଙ୍ଗେ ସଙ୍ଗେ ଦେଶ ମିଶ୍ରଣ ସମ୍ବନ୍ଧେ ନ୍ୟାୟ ସଂଗତ ଓ ଆଇନ୍ ଅନୁମୋଦିତ ଆନ୍ଦୋଳନ କରିବାକୁ ହେବ। ଯେଉଁମାନେ ବୁଝିନାହାଁନ୍ତି, ସେମାନଙ୍କୁ ବୁଝାଇବାକୁ ହେବ। ପ୍ରତି ଗ୍ରାମରେ ପ୍ରତି ସହରରେ ଏହି ଦେଶ ମିଶ୍ରଣ ଆନ୍ଦୋଳନର ସୂତ୍ରପାତ ହେବ। ଏହି ଆନ୍ଦୋଳନ କେତେକ ଶିକ୍ଷିତ ବ୍ୟକ୍ତିଙ୍କ ମଧ୍ୟରେ ଆବଦ୍ଧ ନାହିଁ। ଏହା ଓଡ଼ିଆର ସରଳ ସ୍ୱାଭାବିକ ଆକାଂକ୍ଷା ଏବଂ ଓଡ଼ିଆର ଘରେ ଘରେ ଦେଶ ମିଶ୍ରଣ ଆଶା ଉଦ୍ରେକ ହୋଇଅଛି। ଏହି କଥା ସରକାର ଜାଣନ୍ତୁ ପ୍ରଚାରକ ଯାଇ ଏହି ଆନ୍ଦୋଳନ ଦୃଢ଼ୀଭୂତ କରନ୍ତୁ। ଦେଖିବେ ଲୋକଙ୍କର ପ୍ରାର୍ଥନା ସରକାର ଅଗ୍ରାହ୍ୟ କରିବେ ନାହିଁ।

ଶିକ୍ଷା ସକଳ ସମସ୍ୟାର ସମାଧାନ। ଓଡ଼ିଆ ଜାତି ଯେ ବିଭିନ୍ନ ପ୍ରକାର ସମସ୍ୟାରେ ଆକ୍ରାନ୍ତ ହେଉଥିଲେ, ସେହି ସମସ୍ୟା ଗୁଡ଼ିକର ସମାଧାନ ମଧ୍ୟ ସୁଦୂର ପରାହତ ହେଉଥିଲା ଏହାର କାରଣ ହେଉଛି ସେତେବେଳକୁ ଆମ ରାଜ୍ୟରେ ଉପଯୁକ୍ତ ଶିକ୍ଷାପଦ୍ଧତି କି ଯଥାର୍ଥ ଶିକ୍ଷା ବ୍ୟବସ୍ଥା ନଥିଲା। ଏଥିପାଇଁ ତାଙ୍କ ଅଭିଭାଷଣରେ ସେ ଶିକ୍ଷା ସମ୍ବନ୍ଧରେ ଯେଉଁ ପାଣ୍ଡିତ୍ୟ ପୂର୍ଣ୍ଣ ମନ୍ତବ୍ୟ ରଖିଥିଲେ ତାହା ସର୍ବକାଳିକ ଓ ସାର୍ବଜନୀନ।

## ଶିକ୍ଷା

ଗୋଟାଏ ଜାତିର ବିକାଶ ବା ବିଲୟ ତାର ଶିକ୍ଷା ଉପରେ ନିର୍ଭର କରେ। ଚେତନା ରାଜ୍ୟର ଉତ୍ତରଣ ହିଁ ଶିକ୍ଷାର ଫଳଶ୍ରୁତି ବୋଲି କୁହାଯାଇପାରେ। ଶିକ୍ଷା ସଂପର୍କରେ ବିକ୍ରମ ଦେବ ବର୍ମା ମନ୍ତବ୍ୟ ଦେଇ କହୁଥିଲେ-ହୃଦୟକୁ ଉନ୍ନତ କରିବା, ମନୁଷ୍ୟର ଦେବତା ସୁଲଭ ଗୁଣର ବିକାଶ କରିବା ଏବଂ ମନର ସଂସ୍କାର କରିବା ଯେ କୌଣସି ଶିକ୍ଷାର ଉଦ୍ଦେଶ୍ୟ।" ସାକ୍ଷରତା ସଂଖ୍ୟା ବୃଦ୍ଧି ହେଲେ ଦେଶରେ ଶିକ୍ଷାର ବିକାଶ ହେଲା

ବୋଲି କହିବା ଠିକ୍ କଥା ନୁହେଁ। ଯେଉଁ ଶିକ୍ଷା ମଣିଷ ମନରୁ ପଶୁତ୍ୱର ବିନାଶ କରି ମାନବିକତାର ବିକାଶ କରିବାପାଇଁ ଭୂମିକା ଗ୍ରହଣ କରିଥାଏ ତାହାହିଁ ପ୍ରକୃତ ଶିକ୍ଷା। ଓଡ଼ିଶାର ଅବଧାନ ଚାଟଶାଳୀ ଓ ଚଉପାଢୀ ଗୁଡ଼ିକ ଉପରେ ସେ ପ୍ରାଧାନ୍ୟ ଦେଉଥିଲେ। ଜାତିଭେଦର ବିଚାର ପ୍ରାବଲ୍ୟ ଥିବାବେଳେ ସୁଦ୍ଧା ଅସ୍ପୃଶ୍ୟମାନେ ଏହି ଚାଟଶାଳୀରେ ଭାଗବତ ଆଦି ପଢିପାରିବାର ଯୋଗ୍ୟତା ହାସଲ କରିପାରୁଥିଲେ। ପ୍ରାଚୀନ ପ୍ରତି ତାଙ୍କର ସ୍ୱଭାବ ସୁଲଭ ଶ୍ରଦ୍ଧା ହେତୁ ସେ ସବୁ ପ୍ରାଚୀନ ପଦ୍ଧତି ଭିତରେ ସକରାତ୍ମକ ଦିଗ ଦେଖି ପାରୁଥିଲା। ଆନ୍ଧ୍ର ପ୍ରଦେଶରେ ଓଡ଼ିଆ ଅଧ୍ୟୁଷିତ ଅଞ୍ଚଳ ମାନଙ୍କରେ ଓଡ଼ିଆ ପ୍ରାଥମିକ ବିଦ୍ୟାଳୟର ଅଭାବ ଥିବାରୁ ଓଡ଼ିଆମାନେ ତେଲୁଗୁ ପଢିବାକୁ ବାଧ ହେଉଛନ୍ତି ବୋଲି ସେ ଅନୁଭବ କରୁଥିଲ। ତେଣୁ ସେ ସମୟରେ ସରକାରୀ ସ୍ତରରେ ଶିକ୍ଷାର ପ୍ରଣାଳୀ କିପରି ହେବ ଚର୍ଚ୍ଚା ଆଲୋଚନା ଚାଲିଥିବାବେଳେ ସେ କହୁଥିଲେ ଶିକ୍ଷା ତ ନାହିଁ ଶିକ୍ଷା ପ୍ରଣାଳୀ କଥା ଉଠୁଛି କୋଉଠି ? ଉପାନ୍ତ ଅଞ୍ଚଳ ମାନଙ୍କରେ ଶିକ୍ଷା ଓ ଶିକ୍ଷକଙ୍କ ଅଭାବ ସେ ଅନୁଭବ କରୁଥିଲେ ଗଞ୍ଜାମ ଓ ବିଶାଖା ପାଟଣାରେ ମଧ୍ୟ ସେହିପରି ଶିକ୍ଷା ଓ ଶିକ୍ଷକଙ୍କର ଅଭାବ ସେ ଅନୁଭବ କରି ତାର ସମାଧାନ ପାଇଁ ପ୍ରସ୍ତାବ ରଖିଥିଲେ। ନାରୀ ଶିକ୍ଷାର ପ୍ରଚାର ପ୍ରସାର ପାଇଁ ସେ ଆଗ୍ରହୀ ଥିଲେ। ସେ କହୁଥିଲେ, ନାରୀ ଶିକ୍ଷାକୁ କେବଳ ସାକ୍ଷରତା ଭିତରେ ସୀମିତ ରଖିବା ଉଚିତ ନୁହେଁ। ନାରୀମାନଙ୍କ ଶିକ୍ଷା ଏଭଳି ହେବା ଉଚିତ ଯାହାଫଳରେ ସେମାନେ ନାରୀ ସୁଲଭ ଗୁଣାବଳୀ ଦୟା ପ୍ରୀତି ମାୟା ମମତା ସୁଶ୍ରୁଷା ଇତ୍ୟାଦି ପ୍ରତି ଆସ୍ଥାବତୀ ହେବେ। ଆମ ଦେଶରେ ବହୁଦିନ ଧରି ନାରୀମାନଙ୍କ ଶିକ୍ଷାପାଇଁ ଅବହେଳା ପ୍ରଦର୍ଶନ ହୋଇଥିବାରୁ ଓଡ଼ିଶା ଆଜି ପ୍ରଗତି ପଥରେ ବହୁ ପଛରେ ପଡ଼ିଛି ବୋଲି ସେ କହିଛନ୍ତି।

ନାରୀ ପୁରୁଷ ନିର୍ବିଶେଷରେ ସମସ୍ତଙ୍କୁ ଉତ୍ତମ ଶିକ୍ଷା ପ୍ରଦାନ କରାଗଲେ ଆମ ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ସମ୍ଭବ ବୋଲି ସେ ଆଶା ପ୍ରକାଶ କରୁଥିଲେ। ପ୍ରକୃତ ଶିକ୍ଷାର ଗୁଣାତ୍ମକ ମାନ ଉପରେ ସେ ଗୁରୁତ୍ୱ ଦେଇ କହିଥିଲେ, କ୍ଷୁଧା ପ୍ରପୀଡ଼ିତ ବୋଲି ଯାହା ତାହା ଖାଇବାକୁ ଦେଇଦେବା ଆଦୌ ଶୁଭ ଲକ୍ଷଣ ନୁହେଁ। ଏହାଦ୍ୱାରା ଶରୀର ଅଜୀର୍ଣ୍ଣ ରୋଗରେ ପୀଡ଼ିତ ହୁଏ। ସେହିପରି ଉପଯୁକ୍ତ ଶିକ୍ଷା ଅଭାବରେ ଜାତି ମାନସିକ ସ୍ତରରେ ଅଜୀର୍ଣ୍ଣ ରୋଗରେ ପୀଡ଼ିତ ହୋଇଥାଏ। ଜାତିର ମସ୍ତିଷ୍କ ସୁସ୍ଥ ନ ରହିଲେ ଦେଶର ସର୍ବାଙ୍ଗୀନ ଉନ୍ନତି ଆଦୌ ସମ୍ଭବ ନୁହେଁ।

ଉପଯୁକ୍ତ ଶିକ୍ଷା ପଦ୍ଧତି ପାଇଁ ଉପଯୁକ୍ତ ପାଠ୍ୟପୁସ୍ତକ ଆବଶ୍ୟକତା ଓଡ଼ିଆ ଭାଷାର ନଥିବାର ଅନୁଭବ କରି ସେ ଦୁଃଖ ପ୍ରକାଶ କରୁଥିଲେ। ଓଡ଼ିଆ ଭାଷାରେ ଅଭିଧାନ ରଚନା ପାଖରୁ ଆରମ୍ଭ କରି ସୃଜନଶୀଳ ସାହିତ୍ୟ ପର୍ଯ୍ୟନ୍ତ ସେ ସବୁ ବିଭାଗରେ କିଛି କିଛି ରଚନା ହେଉ ବୋଲି କାମନା କରୁଥିଲେ। ରାଧାନାଥ ରାୟ, ମଧୁସୂଦନ ରାଓ,

ରାମଶଙ୍କର ରାୟ ଓ ଫକୀର ମୋହନ ସେନାପତିଙ୍କ ରଚନାକୁ ଭୂୟସୀ ପ୍ରଶଂସା କରି ସେ କହୁଥିଲେ- "ଗୋଟିଏ ପ୍ରକାଣ୍ଡ ଜାତି ନିମନ୍ତେ ଏହି ଚାରିଜଣକ ଦ୍ୱାରା ବହୁ ଯତ୍ନରେ ସଞ୍ଚିତ ସୁମିଷ୍ଟ ଖାଦ୍ୟ ମଧ୍ୟ ଯଥେଷ୍ଟ ନୁହେଁ। ନାନା ପ୍ରକାର ଗ୍ରନ୍ଥ ବିଭିନ୍ନ ପ୍ରକାର ଉପନ୍ୟାସ କାବ୍ୟ ନାଟକ ଆଦି ରଚନାର ଆବଶ୍ୟକତା ନିହାତି ଆବଶ୍ୟକ।

'ଉତ୍କଳ ସାହିତ୍ୟ ସମାଜ'ର ଗୁରୁଦାୟିତ୍ୱ ତଥା ରାଜରାଜୁଡ଼ା ଓ ସାହିତ୍ୟ ପ୍ରତି ଅନୁରାଗ ସଂପର୍କରେ ମଧ୍ୟ ସେ ସଚେତନ ଥିଲେ।

ଜୟପୁର ପରି ଉପାନ୍ତ ଅଞ୍ଚଳରେ ଥାଇ ଓ ଜୀବନର ଅଧିକାଂଶ ସମୟ ବିଶାଖାପାଟଣାରେ ଅତିବାହିତ କରିଥିଲେ ସୁଦ୍ଧା ସେ ଓଡ଼ିଶାର ଶିକ୍ଷା ସାହିତ୍ୟ ସଂପର୍କରେ ରୀତିମତ ସୂଚନା ରଖୁଥିଲେ।

## ସାମାଜିକ ଦାୟିତ୍ୱ:

ବିକ୍ରମ ଦେବ ବର୍ମା ପରିପୂର୍ଣ୍ଣାଙ୍ଗ ବ୍ୟକ୍ତିତ୍ୱ ଥିଲେ। ଶିକ୍ଷା ଓ ସାହିତ୍ୟ ପାଇଁ ତାଙ୍କ ଚିନ୍ତା ଓ କାର୍ଯ୍ୟ ସୀମିତ ନଥିଲା। ସମାଜର ସର୍ବାଙ୍ଗୀନ ବିକାଶ ପାଇଁ ସେ ଅହରହ ଚେଷ୍ଟିତ ଥିଲେ। କେତେବେଳେ ଏକକ ଭାବରେ ତ ପୁଣି କେତେବେଳେ ସାମୂହିକ। ବହୁ ସାହିତ୍ୟିକଙ୍କ ଅପ୍ରକାଶିତ ପାଣ୍ଡୁଲିପିର ପ୍ରକାଶ ନିମନ୍ତେ ଆର୍ଥିକ ସାହାଯ୍ୟ ପ୍ରଦାନ କରିଥିଲେ। ଲକ୍ଷ୍ମୀ ନାରାୟଣ ସାହୁଙ୍କ Hill tribe of Jeypore ଚିନ୍ତାମଣି ମହାନ୍ତିଙ୍କ ଗ୍ରନ୍ଥାବଳୀ ଓ ବୈକୁଣ୍ଠ ନାଥ ପଟ୍ଟନାୟକଙ୍କର କାବ୍ୟକବିତା ପ୍ରକାଶ ପାଇଁ ସେ ଦାୟିତ୍ୱ ବହନ କରିଥିଲେ। ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ଭାଷାକୋଷର ପ୍ରକାଶ ନିମନ୍ତେ ସେ ଦଶହଜାର ଟଙ୍କା ପ୍ରଦାନ କରିଥିଲେ। ନୀଳକଣ୍ଠ ଦାଶଙ୍କ ନବଭାରତ ମଧ୍ୟ ତାଙ୍କଠାରୁ ବିପୁଳ ସାହାଯ୍ୟ ପ୍ରାପ୍ତ ହୋଇଥିଲା।

ଦାନଶୀଳତା ଶ୍ରୀ ବିକ୍ରମଦେବ ବର୍ମାଙ୍କର ଅନ୍ୟତମ ମହନୀୟ ଗୁଣ ଥିଲା। ବିଶାଖାପାଟଣାରେ ରହଣି ସମୟରୁ ସେ ବହୁ ମେଧାବୀ ଓଡ଼ିଆ ଛାତ୍ରଙ୍କୁ ଉଚ୍ଚଶିକ୍ଷା ପାଇଁ ଆର୍ଥିକ ସାହାଯ୍ୟ ପ୍ରଦାନ କରୁଥିଲେ। ୧୯୩୧ ମସିହାର ଜୟପୁର ରାଜଗାଦୀ ଆରୋହଣ କରିବା ପରଠାରୁ ପ୍ରତିବର୍ଷ ବଞ୍ଚିଥିବା ପର୍ଯ୍ୟନ୍ତ ଆନ୍ଧ୍ର ବିଶ୍ୱବିଦ୍ୟାଳୟକୁ ଏକଲକ୍ଷ ଟଙ୍କା ଲେଖାଏଁ ଦାନ କରୁଥିଲେ। କଟକରେ ସ୍ଥାପିତ ମେଡ଼ିକାଲ କଲେଜ ପାଇଁ ସେ ଏକଲକ୍ଷ ୩୦ ହଜାର ଟଙ୍କା ଦାନ କରିଥିଲେ। ବିଶାଖା ପାଟଣାରେ ନାରୀ ଚିକିତ୍ସାଳୟ, ଶିଳ୍ପ ସଂଗ୍ରହାଳୟ (Industrial Museum) ଆନ୍ଧ୍ର ରଙ୍ଗମଞ୍ଚ ଜଗନ୍ମିତ୍ର ଭଲ ପାଇଁ ତାଙ୍କର ପ୍ରତ୍ୟକ୍ଷ ଆର୍ଥିକ ଅନୁଦାନ ଆଦି ହେତୁ ଆନ୍ଧ୍ରା ଅଧିବାସୀ ତାଙ୍କୁ ଦେବତୁଲ୍ୟ ସମ୍ମାନ ପ୍ରଦର୍ଶନ କରୁଥିଲେ। ତାଙ୍କୁ କୁହାଯାଉଥିଲା ଓଡ଼ିଶାର ବିକ୍ରମାଦିତ୍ୟ। ବିଶାଖାପାଟଣାରେ 'ଓଡ଼ିଆ ସମାଜ'ର ପ୍ରତିଷ୍ଠା ପାଖରୁ ଦେଶ ମିଶ୍ରଣ ଆନ୍ଦୋଳନ ପର୍ଯ୍ୟନ୍ତ ପ୍ରତ୍ୟେକ କ୍ଷେତ୍ରରେ ସେ

ସକ୍ରିୟ ଭୂମିକା ଗ୍ରହଣ କରିଥିଲେ। ସତେ ଯେମିତି ଉପାନ୍ତ ଅଞ୍ଚଳର ଅବହେଳିତ ଓଡ଼ିଆ ଓ ଓଡ଼ିଶାର ସ୍ୱାର୍ଥପାଇଁ ସେ ନିଜକୁ ଉତ୍ସର୍ଗ କରିଦେଇଥିଲେ। ୧୯୧୪ ଖ୍ରୀଷ୍ଟାବ୍ଦରେ ପାରଳାଖେମୁଣ୍ଡି ଠାରେ ଉତ୍କଳ ସମ୍ମେଳନ ନବମ ଅଧିବେଶନରେ ସେ ସଭାପତି ଥିଲେ। ତାଙ୍କର ଉତ୍ସର୍ଗୀକୃତ ବ୍ୟକ୍ତିତ୍ୱକୁ ଅନୁଧ୍ୟାନ କରି ବାସ୍ତବବାଦୀ ଫକୀର ମୋହନ ସେନାପତି ଲେଖିଥିଲେ-

ଏହିପରି ଜଣେ ଯେବେ ଥା'ନ୍ତେ ଉତ୍ତରେ<br>
ବୁଲୁଥା'ନ୍ତି ମୁହିଁ ନିଶ ପକାଇ ହାତରେ (ଉତ୍କଳ ଭ୍ରମଣ)

ଶିକ୍ଷା ସଭ୍ୟତା ଓ ସମାଜ ବ୍ୟବସ୍ଥାର ଉନ୍ନତି ପାଇଁ ପାଠାଗାରର ଗୁରୁତ୍ୱପୂର୍ଣ୍ଣ ଭୂମିକା ସଂପର୍କରେ ସେ ଅବଗତ ଥିଲେ। ଓଡ଼ିଶାର ବିଭିନ୍ନ ପାଠାଗାରକୁ ସେ ବିଭିନ୍ନ ପୁସ୍ତକ ଓ ଅର୍ଥରାଶି ପ୍ରଦାନ କରିଥିଲେ। ନବରଙ୍ଗପୁରଠାରେ ଅବସ୍ଥାପିତ 'ପାଠାଗାର ତାଙ୍କର ଅବଦାନ। ଜୟପୁର ରାଜ ନଅରରେ ଏକ ବିରାଟ ଲାଇବ୍ରେରୀ ସ୍ଥାପନ କରିଥିଲେ। ଏଥିରେ ଓଡ଼ିଆ ତେଲୁଗୁ ସଂସ୍କୃତ ଇଂରାଜୀ ହିନ୍ଦୀ ଭାଷାମାନଙ୍କରେ ବହୁତ ପୁସ୍ତକ ଗଛିତ ରହିଛି। ସେ ତାଙ୍କ ଜୀବନର ଅଧିକାଂଶ ସମୟ ଏହି ପାଠାଗାରରେ ଅତିବାହିତ କରନ୍ତି। ବହୁ ପାଠକ ଗବେଷକଙ୍କ ପଠନ ଓ ତଥ୍ୟ ସଂଗ୍ରହ ସକାଶେ ଏ ପାଠାଗାରଟି ଅତ୍ୟନ୍ତ ଉପାଦେୟ ହୋଇ ରହିଛି।

ଶିକ୍ଷା ଅନୁଷ୍ଠାନ ମାନଙ୍କୁ ଆର୍ଥିକ ସହାୟତା ପ୍ରଦାନ କରିବାରେ ସେ ବେଶ୍ ଆଗ୍ରହୀ ଥିଲେ। ବିଶ୍ୱକବି ରବୀନ୍ଦ୍ର ନାଥଙ୍କ ଶାନ୍ତି ନିକେତନକୁ ସେ ପାଞ୍ଚହଜାର ଟଙ୍କା ପ୍ରଦାନ କରିଥିଲେ। ଡାକ୍ତର ମୁଞ୍ଜେଙ୍କ ହିନ୍ଦୁ ସୈନିକ ଶିକ୍ଷା ଅନୁଷ୍ଠାନକୁ ତିନି ହଜାର ଟଙ୍କା ଓ ବାଣପୁର ହାଇସ୍କୁଲକୁ ଦୁଇହଜାର ଟଙ୍କା ପ୍ରଦାନ କରିଥିଲେ।

ବିଶାଖା ପାଟଣାରେ ଅବସ୍ଥାପିତ ଏକ ବିଜ୍ଞାନ ଓ କାରିଗରୀ ଶିକ୍ଷା ଅନୁଷ୍ଠାନକୁ ଆର୍ଥିକ ସାହାଯ୍ୟ ପ୍ରଦାନ କରିଥିଲେ। ଯାହା ଫଳରେ ଏହି କଲେଜର ନାମକରଣ ହୋଇଥିଲା ଜୟପୁର କଲେଜ ଅଫ୍ ସାଇନ୍ସ ଆଣ୍ଡ ଟେକ୍ନୋଲୋଜି।

ଶ୍ରୀ ବିକ୍ରମ ଦେବ ବର୍ମାଙ୍କର ଅନ୍ୟତମ କୀର୍ତ୍ତି ହେଉଛି ଜୟପୁରଠାରେ ପ୍ରତିଷ୍ଠିତ ବିକ୍ରମଦେବ ମହାବିଦ୍ୟାଳୟ। ସରକାର ଏହି ମହାବିଦ୍ୟାଳୟ ସ୍ଥାପନ କରିଥିଲେ କିନ୍ତୁ ଏହାର ଭିତ୍ତିଭୂମି ନିର୍ମାଣ ପାଇଁ ଆର୍ଥିକ ସହାୟତା ପ୍ରଦାନ କରିଥିଲେ। ମହାବିଦ୍ୟାଳୟ ପାଇଁ ବିକ୍ରମ ଦେବ ବର୍ମାଙ୍କ ଅକୁଣ୍ଠିତ ଦାନ ଓ ସହଯୋଗିତାକୁ ସମ୍ମାନ ପ୍ରଦର୍ଶନ ତଥା ସେ ଅଞ୍ଚଳର ଜଣେ ମହନୀୟ ବ୍ୟକ୍ତିତ୍ୱ ହୋଇଥିବାରୁ ତାଙ୍କ ନାମାନୁସାରେ ଏହି କଲେଜର ନାମକରଣ କରାଯାଇଥିଲା ବିକ୍ରମ ଦେବ ମହାବିଦ୍ୟାଳୟ।

ସେ ଜୟପୁରରେ ପ୍ରଥମ ପ୍ରେସ୍ ସ୍ଥାପନ କରିଥିଲେ। ବିକ୍ରମ ପ୍ରେସ୍ ହେଉଛି ଅବିଭକ୍ତ କୋରାପୁଟ ଜିଲ୍ଲାର ପ୍ରଥମ ମୁଦ୍ରଣାଳୟ। ଏହି ପ୍ରେସ୍‌ରୁ ୧୯୪୦ ମସିହାରୁ

ଦୀର୍ଘ କୋଡ଼ିଏ ବର୍ଷଧରି ପ୍ରଜାବଣୀ ନାମକ ଏକ ସାପ୍ତାହିକୀ ପତ୍ରିକା ପ୍ରକାଶ ପାଉଥିଲା। ଉପାନ୍ତ ଅଞ୍ଚଳରେ ଏପରି ଏକ ସଫଳ ପ୍ରଚେଷ୍ଟା ସେ ସମୟରେ ରାଜା ବିକ୍ରମ ଦେବଙ୍କ ଦ୍ୱାରା ହିଁ କେବଳ ସମ୍ଭବ।

ଜୟପୁର ଅଞ୍ଚଳର ଚିତ୍ରକଳାକୁ ଦେଶ ବିଦେଶରେ ପରିଚିତ କରାଇବା ଓ ଦେଶବିଦେଶର ଚିତ୍ରକଳା ସଂପର୍କରେ ଜୟପୁର ଅଧିକାରୀଙ୍କ ପାଖରେ ପରିଚିତ କରାଇବା ପାଇଁ ସେ ଗୋଟିଏ ଅଭିନବ ପ୍ରଚେଷ୍ଟା କରିଥିଲେ। ରାଜା ନଅର ପରିସର ମଧ୍ୟରେ ସେ ଏକ ଚିତ୍ରଶାଳା ସ୍ଥାପନ କରିଥିଲେ। ଚିତ୍ରକର ସୀମାଦ୍ରି ମହାରଣାଙ୍କୁ ସେ ଚିତ୍ରକଳାରେ ଅଧିକ ଜ୍ଞାନ ଅର୍ଜନ କରାଇବା ନିମନ୍ତେ ମାନ୍ଦ୍ରାଜ କଳା ମହାବିଦ୍ୟାଳୟକୁ ପ୍ରେରଣ କରିଥିଲେ। ସେଠାରୁ ଫେରିଆସିବା ପରେ ସେ ବହୁ ତୈଳଚିତ୍ର ଅଙ୍କନ କରିଥିଲେ। ଦେଶର ବିଭିନ୍ନ ଅଞ୍ଚଳରେ ହେଉଥିବା ଚିତ୍ରକଳା ପ୍ରଦର୍ଶନୀରେ ସୀମାଦ୍ରୀ ମହାରଣାଙ୍କୁ ଚିତ୍ରପଟ ନେଇ ପ୍ରଦର୍ଶନ କରିବା ନିମନ୍ତେ ପ୍ରେରଣ କରୁଥିଲେ।

ଋଷିପ୍ରତିମ ରାଜା ବିକ୍ରମଦେବଙ୍କ ପ୍ରତିଭା ପାଣ୍ଡିତ୍ୟ, ଉଦାରତା, ଦାନଶୀଳତା ଓ ପ୍ରଜାବତ୍ସଳତା ଆଦି ଗୁଣାବଳୀ ପାଇଁ ସେ ଓଡ଼ିଶାର ରାଜାମାନଙ୍କ ମଧ୍ୟରେ ଏକ ସ୍ୱତନ୍ତ୍ର ମର୍ଯ୍ୟାଦାବନ୍ତ ସ୍ଥାନ ଅଧିକୃତ କରିପାରିଥିଲେ। ଜୟପୁର ରାଜ୍ୟକୁ ଏକ ସମୃଦ୍ଧ ରାଜ୍ୟର ମାନ୍ୟତା ଦେବାରେ ତାଙ୍କର ଅବଦାନ ଅବିସ୍ମରଣୀୟ। ତାଙ୍କର କୋଡ଼ିଏ ବର୍ଷର ରାଜତ୍ୱ କାଳ ଜୟପୁର ଇତିହାସରେ ସୁବର୍ଣ୍ଣ ଯୁଗ ଥିଲା। ଜଣେ ଦକ୍ଷ ଶାସକ ଭାବରେ ତାଙ୍କର ପ୍ରଜା ହିତକର କାର୍ଯ୍ୟାବଳି ଯଥେଷ୍ଟ ଥିଲା।

ଅବହେଳିତ ଅବସ୍ଥାରେ ଥିବା ପ୍ରାଚୀନ ମନ୍ଦିର ଗୁଡ଼ିକର ପୁନଃନିର୍ମାଣ କରାଇ ନିତ୍ୟ ପୂଜାପାଠର ବ୍ୟବସ୍ଥା କରାଇଥିଲେ। ଆଦିବାସୀ ମାନଙ୍କର ବିକାଶ ପାଇଁ ବିଭିନ୍ନ ବିକାଶମୂଳକ କାର୍ଯ୍ୟ ସହ ପ୍ରଜାଙ୍କ କରଭାର ଲାଘବ, ରାଜ୍ୟରେ ପ୍ରଥମ ସଂସ୍କୃତ ବିଦ୍ୟାଳୟ ଓ ପ୍ରଥମ ଚାରୁକଳା ବିଦ୍ୟାଳୟ ପ୍ରତିଷ୍ଠା, ଚନ୍ଦନ, କାଜୁ, କଫି, ତେଜପତ୍ର ବୃକ୍ଷରୋପଣ ଜୟପୁର ମୋତି ମହଲଠାରୁ ଗେଷ୍ଟ ହାଉସ୍ ପର୍ଯ୍ୟନ୍ତ ରାଜମାର୍ଗର ପ୍ରଶସ୍ତୀ କରଣ ନାଳ ନର୍ଦ୍ଦମାର ବ୍ୟବସ୍ଥା ସମବାୟ ବ୍ୟାଙ୍କ ସ୍ଥାପନ ପ୍ରଭୃତି ବହୁତ ଜନହିତକର କାର୍ଯ୍ୟ ସଂପନ୍ନ କରିଥିଲେ। ସେ ଯେପରି ଥିଲେ ଲକ୍ଷ୍ମୀବନ୍ତ ପୁରୁଷ। ଯେଉଁ ମୁହୂର୍ତ୍ତରୁ ସେ ଜୟପୁର ରାଜଗାଦୀରେ ଆସୀନ ହୋଇଛନ୍ତି ତାପରଠାରୁ ରାଜ୍ୟରେ ଉତ୍ତରୋତ୍ତର ଉନ୍ନତି ଆରମ୍ଭ ହୋଇଯାଇଛି, ସେ ଜୟପୁରର ସର୍ବଶେଷ ରାଜା। ନିଜ ସୁଖସ୍ୱାଛନ୍ଦ୍ୟ ପରିବର୍ତ୍ତେ ପ୍ରଜାଙ୍କର ସୁଖ ସ୍ୱାଛନ୍ଦ୍ୟ ତାଙ୍କପାଇଁ ମୁଖ୍ୟ ଥିଲା। ପ୍ରଜାମାନଙ୍କ ପ୍ରତି ସେ ଅତ୍ୟନ୍ତ ସମ୍ବେଦନଶୀଳ ଓ ଉଦାରଚେତା ଥିଲେ। ଜଣେ ଉତ୍ତମ ପ୍ରଜାପାଳକ ଭାବେ ସେ ଯେମିତି ପ୍ରଜାଙ୍କର ପ୍ରିୟଭାଜନ ଥିଲେ ସାହିତ୍ୟ କ୍ଷେତ୍ରରେ ମଧ୍ୟ ସେ ଓଡ଼ିଆ ସାହିତ୍ୟ ପାଇଁ ଏକ ଅସପତ୍ନ ଆସନ ଅଧିକୃତ କରିଥିଲେ। ଆଗାମୀ ଅଧ୍ୟାୟ ମାନଙ୍କରେ ରାଜା ବିକ୍ରମଦେବ ବର୍ମାଙ୍କର ସାହିତ୍ୟିକ ବ୍ୟକ୍ତିତ୍ୱ ଉପରେ ଆଲୋକପାତ କରାଯାଉଛି।

# ଚତୁର୍ଥ ଅଧ୍ୟାୟ

## ବିକ୍ରମ ବର୍ମାଙ୍କ ସାରସ୍ୱତ ସମ୍ଭାର

(୧) ନାଟ୍ୟକାର-ତେଲୁଗୁ, ଓଡ଼ିଆ
(୨) କାବ୍ୟକାର-ବିକ୍ରମ
(୩) ଅନୁସୃଜନକାର-ବିକ୍ରମ
(୪) କଥାକାର-ବିକ୍ରମ
(୫) ପ୍ରାବନ୍ଧିକ-ବିକ୍ରମ

## ଶ୍ରୀ ବିକ୍ରମ ଦେବଙ୍କ ସାରସ୍ୱତ ସମ୍ଭାର

ଓଡ଼ିଆ ସାରସ୍ୱତ ଭଣ୍ଡାରରୁ ବିକ୍ରମଦେବ ବର୍ମାଙ୍କର ଅବଦାନ ଅନନ୍ୟ। ଓଡ଼ିଆ ତେଲୁଗୁ ଓ ସଂସ୍କୃତ ଭାଷାରେ ଅତି ସ୍ୱଚ୍ଛନ୍ଦରେ ସେ ସାହିତ୍ୟର ବିଭିନ୍ନ ବିଭାଗକୁ ଅବଲୀଳା କ୍ରମେ ଅବଗାହନ କରିପାରିଛନ୍ତି। ତାଙ୍କର ସଂସ୍କୃତ ଓ ଓଡ଼ିଆ ଭାଷାର ବିଭିନ୍ନ ରଚନାବଳୀକୁ ନେଇ ଓଡ଼ିଶାର ବିଶିଷ୍ଟ କଥାକାର ଗୋପୀନାଥ ମହାନ୍ତି ଦୁଇଖଣ୍ଡ ଗ୍ରନ୍ଥ କରିଛନ୍ତି। ଏହା ବିକ୍ରମଦେବ ବର୍ମା ରଚନାଳି ନାମରେ ନାମିତ ହୋଇଛି। ପୁସ୍ତକଟିକୁ ଗୋପୀନାଥ ମହାନ୍ତି 'ଗ୍ରନ୍ଥାବଳୀ' ନାମକରଣ କରିବାର ପ୍ରସ୍ତାବ ଦେବାବେଳେ ରାଜକବି ତାଙ୍କର ଚରିତ୍ର ସୁଲଭ ବିନୟରେ 'ରଚନାଳି' ଦେବାପାଇଁ ଇଚ୍ଛା ପ୍ରକାଶ କରିଥିଲେ। ଏହା ପ୍ରଥମ ଭାଗ ଓ ଦ୍ୱିତୀୟ ଭାଗ ଅନୁକ୍ରମରେ ୧୯୪୬ ମସିହାରେ ପ୍ରକାଶ ଲାଭ କରିଥିଲା।

ବିକ୍ରମ ବର୍ମା ରଚନାଳିର ପ୍ରଥମ ଖଣ୍ଡ ୧୪୦ ପୃଷ୍ଠାରୁ ଅଧିକ କବିତାରେ ପରିପୂର୍ଣ୍ଣ। ଏହାପରେ ଗଳ୍ପ, ନାଟକ ଆଦି କ୍ରମରେ ସଜ୍ଜିତ ହୋଇଛି। କିନ୍ତୁ ଦ୍ୱିତୀୟ ଭାଗର ରଚନା ଗୁଡ଼ିକ କୌଣସି କ୍ରମରେ ସଜ୍ଜିତ ହୋଇନାହିଁ। ଓଡ଼ିଆ ଓ ସଂସ୍କୃତ ଭାଷାରେ କ୍ଷୁଦ୍ର କବିତା ୧୮୬ ପୃଷ୍ଠା ପର୍ଯ୍ୟନ୍ତ ଥିବାବେଳେ କ୍ଷୁଦ୍ର କ୍ଷୁଦ୍ର ସାରଗର୍ଭକ ପ୍ରବନ୍ଧ ସହ ଗଳ୍ପ ଓ ଆଲୋଚନା ରହିଛି। ଅନ୍ୟତ୍ର ପ୍ରକାଶିତ ଲେଖକଙ୍କ ଲେଖା ଉପରେ ମତ ମନ୍ତବ୍ୟମାନ ମଧ୍ୟ ରହିଛି। ଏହାଛଡ଼ା କବି ଶେଖର ଚିନ୍ତାମଣିଙ୍କ ଜୟପୁର ଓ ଶ୍ରୀ ରାଧାଚରଣ ପଣ୍ଡାଙ୍କର ରାଜକବି ଶ୍ରୀ ବିକ୍ରମଦେବ ବର୍ମା ପୁସ୍ତକ ସଂକଳିତ ହୋଇଛି। ରଚନାଳିରେ ସଂକଳିତ ରଚନା ସମୂହ ପରିବର୍ତ୍ତେ ତାଙ୍କର ଆଉ କିଛି ରଚନାର ସୂଚନା ମିଳେ। ଯଥା:-ପୁରନ୍ଦରୀ ଦାସୀ ଚରିତ୍ର। ମୂଳ ତେଲୁଗୁ ଭାଷାରେ ରଚିତ ଓ ବିକ୍ରମଙ୍କ ଦ୍ୱାରା ଅନୁଦିତ କଳାପୂର୍ଣ୍ଣୋଦୟ ତୁଳସୀଙ୍କ ବିରଚିତ ବିନୟ ପତ୍ରିକାର ଓଡ଼ିଆ ଅନୁବାଦ। କିନ୍ତୁ ଏଗୁଡ଼ିକ ଏବେ ଦୁଷ୍ପ୍ରାପ୍ୟ।

ତେଲୁଗୁ ଭାଷାରେ ତାଙ୍କ ରଚିତ ରଚନା ସମୂହ ସଂକଳିତ ହୋଇ 'ରଚନାଲୁ' ନାମରେ ନାମିତ ହୋଇଛି।

## ତେଲୁଗୁ ସାହିତ୍ୟ:-

ସାରସ୍ୱତ ସାଧକ ଶ୍ରୀ ବିକ୍ରମ ଦେବ ବର୍ମା ସାହିତ୍ୟର ବହୁବିଧ ବିଭାଗରେ ଲେଖନୀ ଚାଳନା କରି ସଫଳତା ଅର୍ଜନ କରିଛନ୍ତି। ସେଗୁଡ଼ିକ ମଧ୍ୟରୁ ନାଟକ ଗୁଡ଼ିକ ତାଙ୍କର ଆଦ୍ୟ ଜୀବନର ରଚନା। ପ୍ରଥମ ନାଟକ ସେ ଓଡ଼ିଆରେ ରଚନା କରିଥିଲେ। ତାର ନାମ ଥିଲା ସଂଗୀତ ଶ୍ରୀ ରାଧାମାଧବ ନାଟକ। ପରେ ପରେ ସେ ଦୁଇଟି ତେଲୁଗୁ ନାଟକ ରଚନା କରିଥିଲେ। ଆଲୋଚନାର ସୌକର୍ଯ୍ୟ ଦୃଷ୍ଟିରୁ ପ୍ରଥମେ ତାଙ୍କ ବିରଚିତ ତେଲୁଗୁ ସୃଷ୍ଟି ଉପରେ ଯତ୍ କିଞ୍ଚିତ୍ ଆଲୋକପାତ କରାଯାଉଛି। ତେଲୁଗୁ ଭାଷାରେ ଛୋଟବଡ଼ କବିତା, ଆଲୋଚନା ଟୀକା ଟିପ୍ପଣୀ ଆଦି ସହ ସେ କାବ୍ୟ ନାଟକ ରଚନା କରିଛନ୍ତି। ତାଙ୍କର ତେଲୁଗୁ ଭାଷାର ବିରଚିତ ନାଟକ ଦୁଇଟି ହେଉଛି ଶ୍ରୀନିବାସ କଲ୍ୟାଣ ନାଟକ, ମାନବତୀ ଚରିତମ୍।

### ଶ୍ରୀନିବାସ କଲ୍ୟାଣ ନାଟକ (୧୮୯୯)

ଏହା ଏକ ପଞ୍ଚ ଅଙ୍କ ବିଶିଷ୍ଟ ନାଟକ। ଏହାର ପ୍ରଥମ ସଂସ୍କରଣ ୧୮୯୯ରେ ହୋଇଥିଲା। କର୍ଣ୍ଣାଟକ ପ୍ରଦେଶର ମହାରାଷ୍ଟ୍ର ସଂଘ ନାମକ ଗୋଟିଏ ନାଟକ କମ୍ପାନୀ ଏହାକୁ ବିଶାଖା ମଞ୍ଚସ୍ଥ କରିଥିଲା। ଜଗନ୍ମିତ୍ର ରଙ୍ଗମଞ୍ଚରେ ତେଲୁଗୁ ଭାଷାରେ ଅଭିନୀତ କରିବା ନିମନ୍ତେ ଶ୍ରୀଯୁକ୍ତ ବର୍ମା ଏହାକୁ ତେଲୁଗୁ ଭାଷାରେ ଅନୁବାଦ କରିଥିଲେ।

ଏହା ଲକ୍ଷ୍ମୀ ଓ ବିଷ୍ଣୁଙ୍କର ଲୀଳା ସଂପର୍କୀୟ ନାଟକ। କୌଣସି କାରଣବଶତଃ ଲକ୍ଷ୍ମୀ ଓ ବିଷ୍ଣୁଙ୍କ ମଧ୍ୟରେ ମନାନ୍ତର ଘଟିଲା। ଫଳରେ ଦୁହେଁ ଦୁହିଁଙ୍କ ପାଖରୁ ବହୁକାଳ ପର୍ଯ୍ୟନ୍ତ ପୃଥକ୍ ହୋଇ ରହିଲେ। ଏହାପରେ ସେମାନଙ୍କର ବିଭିନ୍ନ ସ୍ଥାନରେ ବାରମ୍ବାର ବିଭିନ୍ନ ନାମରେ ଜନ୍ମ ହୋଇଛି। ଶେଷରେ ଗୋଟିଏ ସ୍ଥାନରେ ଲକ୍ଷ୍ମୀ ପଦ୍ମାବତୀ ନାମରେ ଓ ବିଷ୍ଣୁ ଶ୍ରୀନିବାସ ରୂପରେ ଜନ୍ମ ହୋଇଛନ୍ତି। ଦୁହିଁଙ୍କର ବିବାହ ସଂପନ୍ନ ହୋଇଛି ଏବଂ ସେମାନଙ୍କର ପୁନର୍ମିଳନ ହୋଇଛି।

ଭାଷା ଓ ଶୈଳୀ ଦୃଷ୍ଟିରୁ ନାଟକଟି ଉଚ୍ଚକୋଟୀର ହୋଇଛି। ଶିଷ୍ଟ ଭାଷା ସହ ଗ୍ରାମ୍ୟ ଶବ୍ଦାବଳିର ଅପୂର୍ବ ସଂଯୋଗ ନାଟକଟିକୁ ରମଣୀୟ କରିଛି। ଜଗନ୍ମିତ୍ର ହଲ୍‌ରେ ପ୍ରଦର୍ଶିତ ହେଉଥିବା ନାଟକ ମାନଙ୍କ ମଧ୍ୟରେ ଏହି ନାଟକଟି ବେଶ୍ ଲୋକପ୍ରିୟତା ହାସଲ କରିଥିଲା।

### ମାନବତୀ ଚରିତମ୍- (୧୯୦୫)

ଏହା ଏକ ଉଚ୍ଚ ଶ୍ରେଣୀୟ ନାଟକ। ଭାଷାଶୈଳୀ ଦୃଷ୍ଟିରୁ ଏହା ଉତ୍କୃଷ୍ଟ ମାନର ହୋଇଥିବାରୁ ବହୁଦିନ ପର୍ଯ୍ୟନ୍ତ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର ଆଇ.ଏ କ୍ଲାସ୍‌ରେ ପଢା ହେଉଥିଲା। ନାଟକଟିର ସାହିତ୍ୟିକ ମୂଲ୍ୟବୋଧ ଅକ୍ଷୁଣ୍ଣ ଥିଲା।

କଳିଙ୍ଗ ରାଜା ମାଧବ ବର୍ମାଙ୍କ ପୁତ୍ର ଗୋପାଳ ବର୍ମା ବିଦୁଷୀ କନ୍ୟାଟିଏ ବିବାହ କରିବାକୁ ଚାହୁଁଥିଲେ। ଭାରତର ବିଭିନ୍ନ ଅଞ୍ଚଳ ପରିଭ୍ରମଣ କରି ସେ କୌଣସି ରାଜକୁମାରୀଙ୍କୁ ନିଜର ପସନ୍ଦ ଉପଯୋଗୀ ପାଇଲେ ନାହିଁ, କାରଣ ତାଙ୍କର ବିବାହର ସର୍ତ୍ତ ଥିଲା ଯେଉଁ ରାଜକୁମାରୀ ତାଙ୍କ ପ୍ରଶ୍ନଗୁଡ଼ିକର ଉତ୍ତର ଦେବ, ତାକୁ ସେ ବିବାହ କରିବେ। ସବୁ ରାଜକୁମାରୀ ବିଫଳ ହେବାପରେ କର୍ଣ୍ଣାଟକ ରାଜକୁମାରୀ ମାନବତୀ ତାଙ୍କ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ଓ ଗୋପାଳ ବର୍ମାଙ୍କୁ ବିବାହ କରିଥିଲେ। କିନ୍ତୁ ବିବାହ ପରେ ସେ ଜଣେ ଦୁଷ୍ଟ ତସ୍କର ଦ୍ୱାରା ଅପହୃତ ହୋଇ ଓ ପରେ ନିଜର ବୁଦ୍ଧି ପ୍ରୟୋଗ ପୂର୍ବକ ସତୀତ୍ୱକୁ ଅକ୍ଷୁର୍ଣ୍ଣ ରଖି ଗୋପାଳ ବର୍ମାଙ୍କ ପାଖକୁ ଫେରିଆସିଥିଲେ ଓ ତସ୍କରକୁ ଦଣ୍ଡିତ କରିଥିଲେ ତାହାହିଁ ଏ ନାଟକର ବିଷୟବସ୍ତୁ।

## କୃଷାର୍ଜୁନ ଚରିତମ୍ (କାବ୍ୟ)

ତେଲୁଗୁ ଭାଷାରେ ରଚିତ କୃଷାର୍ଜୁନ ଚରିତମ୍ ଏକ ଚମତ୍କାର କାବ୍ୟ, ଯାହାର ରଚୟିତା ହେଉଛନ୍ତି ମାନ୍ତ୍ରୀ ପ୍ରଗଡ଼ା ସୂର୍ଯ୍ୟପ୍ରକାଶ। ଏହା ୧୮୬୩ ଖ୍ରୀଷ୍ଟାବ୍ଦରେ ରଚିତ ହୋଇଥିଲା। ଏହି କାବ୍ୟଟି ତାଳପତ୍ର ପୋଥିରେ ରଚିତ ହୋଇଥିଲା। ଦ୍ୱୈତ ଅର୍ଥ ବୋଧକ ଏହି କାବ୍ୟଟି ଅତ୍ୟନ୍ତ କଠିନ ଓ ଦୁର୍ବୋଧ ଥିଲା। ଏଥିରେ କୌଣସି ଟୀକା ଟୀପ୍ପଣୀ ମଧ୍ୟ ନଥିଲା। ମୂଳ କବିଙ୍କର ପ୍ରପୌତ୍ର ଠାରୁ ଏହି ଅପ୍ରକାଶିତ ପାଣ୍ଡୁଲିପିଟି ଆଣି ସେ ଟୀକା ଟିପ୍ପଣୀ ସହ ବିଶଦ ବ୍ୟାଖ୍ୟା, ଭାବାର୍ଥ ଓ ଅର୍ଥ ଲେଖି ପ୍ରକାଶ କରିଥିଲେ।

ଏହି କାବ୍ୟଟି ପାଇଁ ବିକ୍ରମଦେବ ବର୍ମାଙ୍କୁ ଆନ୍ଧ୍ର ଅଧିକରଣ ଅତି ଉଚ୍ଚତର ସ୍ଥାନ ପ୍ରଦାନ କରିଥିଲା। ତେଲୁଗୁ ଭାଷାରେ ତାଙ୍କର ପାଣ୍ଡିତ୍ୟ ଓ ପ୍ରତିଭା ସର୍ବଜନ ସ୍ୱୀୟତ ହୋଇଥିଲା।

## ନୀତିଗୀତିତତି (୧୯୧୩)

୧୯୧୩ ଖ୍ରୀଷ୍ଟାବ୍ଦରେ ବିଶାଖାପାଟଣାରେ ପ୍ରକାଶିତ ହୋଇଥିଲା। ଚାଣକ୍ୟଙ୍କ ଶ୍ଳୋକ ଭଳି ଏହି ପୁସ୍ତକରେ ୮୦ଟି ଛୋଟ ଛୋଟ ଶ୍ଳୋକ ମାଧ୍ୟମରେ ନୀତିବାଣୀ ରଚିତ ହୋଇଥିଲା। ଏହି ପୁସ୍ତକଟି କିଛି କାଳ ପାଇଁ ମାନ୍ଦ୍ରାଜର ସ୍କୁଲମାନଙ୍କରେ ପାଠ୍ୟପୁସ୍ତକ ରୂପେ ପ୍ରଚଳିତ ଥିଲା।

## ଗୋବିନ୍ଦ ମଞ୍ଜରୀକା ବଳି:-

ଏହି ପୁସ୍ତକଟି ଶ୍ରୀମତ୍ ଶଙ୍କରାଚାର୍ଯ୍ୟଙ୍କର ମୋହ ମୁଦ୍‌ଗର ପୁସ୍ତକର ତେଲୁଗୁ ଅନୁବାଦ। ଏଥିରେ ମୂଳଶ୍ଳୋକ ସହ ତେଲୁଗୁ ଭାଷାରେ ଶ୍ଳୋକର ଅନୁବାଦ ଗୀତ ଆକାରରେ ରହିଛି।

## ଶ୍ରୀକୃଷ୍ଣ ଗୀତବ୍ରତ:-

ଏହା ଏକ ଭକ୍ତି ରସାତ୍ମକ ପୁସ୍ତକ। ତେଲୁଗୁ ଭାଷାରେ ଶ୍ରୀଯୁକ୍ତ ବିକ୍ରମ ବର୍ମାଙ୍କର କେତେକ ଧର୍ମ ମୂଳକ ଲେଖା ଏଥିରେ ପ୍ରକାଶିତ ହୋଇଛି।

ବିକ୍ରମ ଦେବ ବର୍ମାଙ୍କର ଉପରୋକ୍ତ ରଚନାବଳି ତେଲୁଗୁ ସାରସ୍ୱତ କ୍ଷେତ୍ରରେ ଏକ ସମ୍ମାନିତ ସ୍ଥାନ ପ୍ରଦାନ କରିବାରେ ସମର୍ଥ ହୋଇଛି। ତାଙ୍କର ସକଳ ତେଲୁଗୁ ରଚନା ସମୂହ 'ରଚନାଲୁ' ନାମରେ ସଂଗୃହୀତ ହୋଇ ପ୍ରକାଶିତ ହୋଇଛି।

**ବିକ୍ରମ ବର୍ମାଙ୍କ ଓଡ଼ିଆ ନାଟକ:-**

**ଶ୍ରୀ ସଂଗୀତ ରାଧାମାଧବ** ନାଟକ ବିକ୍ରମଦେବ ବର୍ମାଙ୍କର ପ୍ରଥମ ନାଟକ। ଏହା ୧୮୮୪ ଖ୍ରୀଷ୍ଟାବ୍ଦରେ ରଚିତ ହୋଇଥିଲା ଓ ୧୯୮୭ ରେ ଛାପା ଅକ୍ଷରରେ ପ୍ରକାଶିତ ହୋଇଥିଲା। ନାଟକଟି ରଚନାଲିରେ ସ୍ଥାନିତ ହୋଇନାହିଁ। ଶ୍ରୀଯୁକ୍ତ ବିକ୍ରମଦେବ ବର୍ମା ବୈଷ୍ଣବ ଚେତନାରେ ଉଦ୍‌ବୁଦ୍ଧ ହୋଇଥିବାରୁ ନାଟକଟିରେ ଅନ୍ୟପରି ରାଧାକୃଷ୍ଣଙ୍କ ପ୍ରେମଲୀଳାକୁ ଆଧାର କରି ନାଟକଟି ରଚନା କରିଛନ୍ତି। ନାଟକର ବିଷୟ ରଚନା ବେଳେ ସେ ଯେଉଁ ଦ୍ୱିଧାରେ ପଡ଼ିଛନ୍ତି ତାହା ନାଟକର ଭୂମିକାରେ ପଦ୍ୟ ଆକାରରେ ବ୍ୟକ୍ତ କରିଛନ୍ତି:-

"ଉତ୍କଳ ଭାଷାରେ ଏକ ନାଟକ ରଚନେ
ମନ ବଳାଇଲି ମୋର ମିତ୍ରଙ୍କ ବଚନେ
ଭାବିଲି ରାଧାକୃଷ୍ଣ ଚରିତ୍ର ଏକା ସାର
କଲୁଷ ହର ମୁକ୍ତିଦ ବିଚିତ୍ର ଶୃଙ୍ଗାର
ମୋ ରସ ସାଗରୁ କେଉଁ ଲୀଳାକୁ ବର୍ଣ୍ଣିବି
ଏ ଘୋର ଭବ ସାଗରୁ ସୁଖେ ତରିଯିବି
ଏମନ୍ତ ମୁଁ ଚିନ୍ତୁ ଚିନ୍ତୁ ଏହି ଦିବ୍ୟଲୀଳା
ମୋର ଭାଗ୍ୟବଶୁଁ ମୋର ସ୍ଫୂର୍ତ୍ତି ହେଲା
ଶାଳଗ୍ରାମ ସ୍ନାନୋଦକ ହେଲେ କୂପବାରି
ଯଥା ବିବୁଧେ ମସ୍ତକେ ଘେନନ୍ତି ନବାରି
ତଥା ମୋର କବିତ୍ୱ ସକଳ ସୁମାନବେ
ହରିଲୀଳା ରସ ବଶୁଁ ଆଦରିବେ"
(ବିକ୍ରମଦେବ ବର୍ମା-ଭୂମିକା-ଶ୍ରୀ ସଂଗୀତ ରାଧାମାଧବ ନାଟକ)

ନାଟକଟି ପାଞ୍ଚଅଙ୍କ ବିଶିଷ୍ଟ। ପାତ୍ର ପାତ୍ରୀମାନଙ୍କ ସଂସ୍କୃତ ଭାଷାରେ କଥୋପକଥନ ନାଟକର ଅନ୍ୟତମ ବିଶେଷତ୍ୱ। ଗଦ୍ୟ ସଂଳାପ ବହୁତ କମ୍। ପଦ୍ୟ ଆକାରରେ ଯେଉଁ ସଂଳାପ ରହିଛି ସେଥିରେ ମଧ୍ୟଯୁଗୀୟ କାବ୍ୟ କବିତାର ସକଳ ସୌନ୍ଦର୍ଯ୍ୟ ସୁରକ୍ଷିତ ହୋଇଛି। ଯମକ ଅନୁପ୍ରାସ ସ୍ୱଭାବୋକ୍ତି ଆଦି ଅଳଙ୍କାର ସହ ବିଭିନ୍ନ ରାଗରାଗିଣୀ ନାଟକଟିକୁ ଚମତ୍କାର କରିତୋଳିଛି। ଶ୍ରୀ ରାଧିକାଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ମାନ ଅଭିମାନ ସନ୍ଦେହ ଆଦି ସୁନ୍ଦର ଭାବରେ ପ୍ରକାଶିତ ହୋଇଛି ପରେ ଶ୍ରୀକୃଷ୍ଣ ରାଧାଙ୍କର ମାନଭଞ୍ଜନ

କରିଛନ୍ତି। ଏହି ବିଷୟବସ୍ତୁକୁ ନେଇ ନାଟକଟି ରଚିତ। ସଂଗୀତ ଏହାର ମୁଖ୍ୟ ଆଧାର ହୋଇଥିବାରୁ ନାଟକଟିର ନାମ ଶ୍ରୀ ସଂଗୀତ ରାଧାମାଧବ ବୋଲି ନାମକରଣ କରାଯାଇଛି। ନାଟକଟି ବହୁବାର ରଙ୍ଗମଞ୍ଚରେ ଅଭିନୀତ ହୋଇ ଦର୍ଶକୀୟ ସ୍ୱୀକୃତି ଲାଭ କରିଛି।

ବ୍ୟାସକବି ଫକୀର ମୋହନ ନାଟକଟିକୁ ପଢି ଉତ୍କଳ ଭ୍ରମଣ କାବ୍ୟରେ ଲେଖିଛନ୍ତି- "ତୁମର କବିତ୍ୱ ରାଧାମାଧବ ନାଟକ ପଢି ଜ୍ଞାନ କରେ ମୋର ଜୀବନ ସାର୍ଥକ"

କବିବର ରାଧାନାଥ ରାୟ ମଧ୍ୟ ନାଟକଟିକୁ ଭୂୟସୀ ପ୍ରଶଂସା କରିଥିଲେ।

**ବୁଦ୍ଧଚରିତ:-** ଏହା ବିକ୍ରମ ଦେବଙ୍କର ଦ୍ୱିତୀୟ ନାଟକ। ଏହି ନାଟକଟି ପାଞ୍ଚଟି ଅଙ୍କରେ ବିଭକ୍ତ ଗୋଟିଏ କ୍ଷୁଦ୍ର ନାଟକ। ବୁଦ୍ଧଦେବଙ୍କ ଆଦ୍ୟ ଜୀବନର ମଧୁର ଦାମ୍ପତ୍ୟ ପାଖରୁ ଆରମ୍ଭ ହୋଇ ଗୃହତ୍ୟାଗ, ସିଦ୍ଧିଲାଭ ଧର୍ମପ୍ରଚାର ଆଦିକୁ ଆଧାର କରି ନାଟକଟି ରଚିତ। ନାଟକ ମୁଖ୍ୟରସ ସାଧାରଣତଃ ଶୃଙ୍ଗାର ବା ବୀର ରସ ହେବା ଉଚିତ ଓ ଅନ୍ୟ ରସଗୁଡ଼ିକ ଗୌଣରସ ହେବା ବିଧେୟ ବୋଲି ଆମର ଶାସ୍ତ୍ରୀୟ ନିୟମ ରହିଥିଲେ ସୁଦ୍ଧା ନାଟକର ସୂତ୍ରଧର ମୁଖରେ ନାଟ୍ୟକାର ବିକ୍ରମ ଦେବ ବର୍ମା କହିଛନ୍ତି- "ଅନେକ ବିଷୟରେ ଆଧୁନିକ ଜନଙ୍କ ମତ ବଦଳି ଯାଇଥିବାରୁ ନାଟକ ରସ ସମ୍ବନ୍ଧରେ ମଧ୍ୟ ତାହା ପରିବର୍ତ୍ତିତ ହୋଇଥିବ। କେବଳ ମଧୁର ରସ ଆସ୍ୱାଦନ କରୁଥିବା ରସନା ମଧ୍ୟେ ମଧ୍ୟେ ଅନ୍ୟ ରସ ଲାଳସୀ ହେବା ପରି ଶୃଙ୍ଗାର ବୀର ରସ ପ୍ରଧାନ ନାଟକ ଦର୍ଶକଙ୍କ ମାନସ ପ୍ରଧାନ ନାଟକରେ ଇଚ୍ଛୁକ ହୋଇଥିବ।

ନାଟକଟି ମୋଟ ଷୋଳଟି ଚରିତ୍ରକୁ ନେଇ ରଚିତ। ଅତି ସଂକ୍ଷିପ୍ତରେ ବୁଦ୍ଧଦେବଙ୍କ ଜୀବନରେ ଘଟିଥିବା ଗୁରୁତ୍ୱପୂର୍ଣ୍ଣ ଘଟଣା ସମୂହର ଉପସ୍ଥାପନା ଉଚ୍ଚ ଶିଳ୍ପକଳାର ଅପେକ୍ଷା ରଖେ। ବିଭିନ୍ନ ରସର ଅବତାରଣା ସହ ଶିଷ୍ଟ ଓ ଗ୍ରାମ୍ୟ ଶବ୍ଦର ମଧୁର ସଂଯୋଜନାରେ ଚମତ୍କାର ସଂଳାପ ନାଟକଟିକୁ ସାର୍ଥକ କରିଛି। ଅପୂର୍ବ ସାଂଗିତିକତା ନାଟକଟିକୁ ସଫଳ ମଞ୍ଚୋପଯୋଗୀ କରିଛି।

**ଉତ୍କଳ କୁନ୍ଦମାଳା:-**

ଉତ୍କଳ କୁନ୍ଦମାଳା ନାଟକଟି ମୂଳତଃ ସଂସ୍କୃତ ଭାଷାରେ ଅରାରାଜପୁର ନିବାସୀ ଦିଙ୍‌ନାଗ କବିଙ୍କ ଦ୍ୱାରା ରଚିତ। ବିକ୍ରମ ଦେବ ବର୍ମା ଏହାକୁ ଓଡ଼ିଆରେ ରୂପାନ୍ତର କରିଛନ୍ତି। ଏହାର ବିଷୟବସ୍ତୁ ରାମାୟଣର ଉତ୍ତରାକାଣ୍ଡର ଗୋଟିଏ ଉପାଖ୍ୟାନକୁ ନେଇ ରଚିତ। ଏକଦା ସୀତା ଗୁନ୍ଥିଥିବା ଏକ କୁନ୍ଦ ଫୁଲର ମାଳକୁ ଗଙ୍ଗା ନଦୀରେ ଦେଖି ରାମଚନ୍ଦ୍ର ବିରହ ବିଧୂର ହୋଇ ପଡ଼ିଛନ୍ତି। ଶୋକାର୍ଦ୍ର ହୋଇ ସୀତାଙ୍କର ସ୍ମୃତି ରୋମନ୍ଥନ କରିଛନ୍ତି। ତେଣୁ ଏହି ନାଟକର ନାମ କୁନ୍ଦମାଳା। ବିକ୍ରମଙ୍କ ଦ୍ୱାରା ଦିଙ୍‌ନାଗ କବିଙ୍କ "କୁନ୍ଦମାଳା" ଉତ୍କଳୀୟ ଭାଷାରେ ରୂପାନ୍ତରିତ ହୋଇଥିବାରୁ ଏହାର ନାମ ଉତ୍କଳ କୁନ୍ଦମାଳା ନାମ ଧାରଣ କରିଛି ବୋଲି ନାଟ୍ୟକାର ମତବ୍ୟକ୍ତ କରିଛନ୍ତି। (ରଚନାଳୀ-୧-ପୃ.୪୩୯)

ନାଟକଟିରେ ନାନ୍ଦୀ ଓ ସୂତ୍ରଧର ମାଧ୍ୟମରେ ବିଷୟବସ୍ତୁର ସୂଚନା ଦିଆଯିବା ସହ ରାମଙ୍କ ଆଦେଶରେ ଲକ୍ଷ୍ମଣଙ୍କ ଦ୍ୱାରା ସୀତା ନିର୍ବାସନ ପାଖରୁ ନାଟକଟି ଆରମ୍ଭ ହୋଇଛି। ସୀତାଙ୍କର ବାଲ୍ମିକୀ ଆଶ୍ରମରେ ଆଶ୍ରୟ ଗ୍ରହଣ, ଲବକୁଶଙ୍କ ଜନ୍ମ, ରାମ ଲକ୍ଷ୍ମଣଙ୍କ ସହ ଯୁଦ୍ଧ ମିଳନ ପ୍ରଭୃତି ଛଅଅଙ୍କ ବିଶିଷ୍ଟ ନାଟକରେ ବର୍ଣ୍ଣିତ ହୋଇଛି। ଏହା ସଂସ୍କୃତ ନାଟକର ଓଡ଼ିଆ ରୂପାନ୍ତର ହୋଇଥିବାରୁ ଅନେକ ସ୍ଥଳରେ ସଂସ୍କୃତ ମିଶା କ୍ଲିଷ୍ଟ ଓଡ଼ିଆ ସଂଳାପ ଅନୁଭୂତ ହୁଏ। ନାଟକ ସଂପର୍କରେ ନାଟ୍ୟକାର କହନ୍ତି- "ଏ ନାଟକ ଏବଂ ଅନୁବାଦ ବିଧି ଉତ୍କଳ ଦେଶରେ ନୂତନ। ଏ ଅନୁବାଦ ବିବୁଧାନୁମୋଦିତ ହେବାଯାଏ ସାମଞ୍ଜସ୍ୟ ବୋଲାଯାଇ ନପାରେ। ମୁଁ ମୁକ୍ତ କଣ୍ଠରେ ସ୍ୱୀକାର କରେ କି ଏ ନାଟକର ଗୁଣ ଦିଙ୍‌ନାଗ କବିର ଓ ଦୋଷ ମୋହର। ଏହା ନିଶ୍ଚୟ। (ବିକ୍ରମଦେବ ବର୍ମା-ଭୂମିକା, ଉତ୍କଳ କୁନ୍ଦମାଳା, ରଚନାଳି (୧ମ ପୃ.୪୪୦)

ବିକ୍ରମଦେବ ବର୍ମା ନାଟ୍ୟପ୍ରିୟ ମଣିଷଟିଏ ଥିଲେ। ନିଜେ ନାଟକ ରଚନା କରି ମଞ୍ଚସ୍ଥ କରିବା ସଙ୍ଗେ ସଙ୍ଗେ ଅନ୍ୟ ନାଟ୍ୟକାର ମାନଙ୍କ ନାଟକକୁ ମଧ୍ୟ ସେ ମଞ୍ଚସ୍ଥ କରାଉଥିଲେ। ଏଥିନିମନ୍ତେ ବିଶାଖାପାଟଣାରେ ସେ ଜନ୍ମମିତ୍ର ହଲ୍, ଚଳଚ୍ଚିତ୍ର ଭବନ, ଆନ୍ଧ୍ର ସିନେଟୋନ୍ ଓ ରାଜ ମହେନ୍ଦ୍ରୀରେ ଦି ବିକ୍ରମ ହଲ୍ ଆଦି ନିର୍ମାଣ କରାଇଥିଲେ। ଏହି ହଲ୍ ମାନଙ୍କରେ ତେଲୁଗୁ ଓ ଓଡ଼ିଆ ଭାଷାରେ ନାଟକମାନ ମଞ୍ଚସ୍ଥ ହେଉଥିଲା। ଏହାଛଡ଼ା ନାଟ୍ୟଦଳ ଗଠନ କରି ବିଭିନ୍ନ ସ୍ଥାନରେ ନାଟକ ଓ ରାମଲୀଳା ଆଦି ପ୍ରଦର୍ଶନ କରିବାପାଇଁ ମଧ୍ୟ ସେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ।

**କାବ୍ୟକବିତା:-**

ବିକ୍ରମ ଦେବ ବର୍ମା ସ୍ୱଭାବତଃ ଜଣେ କବିଭାବାପନ୍ନ ବ୍ୟକ୍ତିତ୍ୱଟିଏ। ସାହିତ୍ୟର ଯେ କୌଣସି ବିଭାବକୁ ସେ ସ୍ପର୍ଶ କରିଛନ୍ତି ତାହା ତାଙ୍କ କବିପଣରେ ଛଳ ଛଳ ହୋଇଯାଇଛି। କ୍ଷୁଦ୍ର ଗଳ୍ପ କିମ୍ବା ପ୍ରବନ୍ଧଗୁଡ଼ିକ ମଧ୍ୟ ଶୁଷ୍କ ଶବ୍ଦ ସଂଯୋଜନା ନୁହେଁ କବିତାର ଅନ୍ତଃସ୍ୱରଟିଏ ପ୍ରଚ୍ଛନ୍ନ ଭାବରେ ଅନୁଭୂତ ହୁଏ। ପ୍ରଥମ ନାଟକରେ ସଂଗୀତ ପ୍ରବଣତା ଏତେ ଭରପୂର ହୋଇଛି ଯେ ତାର ନାମକରଣ ହିଁ ସେ କରିଛନ୍ତି ଶ୍ରୀ ସଂଗୀତ ରାଧାମାଧବ ନାଟକ। ତାଙ୍କ ସୃଷ୍ଟ କାବ୍ୟ କବିତା ସମୂହରେ ରୀତିଯୁଗୀୟ ସକଳ ସଜ୍ଞା ସୁରକ୍ଷିତ। ଛନ୍ଦ ଅଳଙ୍କାର ରୂପ, ରସ, ଗନ୍ଧରେ ବର୍ଣ୍ଣାଢ୍ୟ ହୋଇଛି। ସଂସ୍କୃତ ଭାଷାରେ ଅଗାଧ ପାଣ୍ଡିତ୍ୟ ତାଙ୍କର କବିତା ଗୁଡ଼ିକୁ ସଂସ୍କୃତାନୁସାରୀ କରି ତୋଳିଛି। କେବଳ ସଂସ୍କୃତାନୁସାରୀ ଓଡ଼ିଆ କବିତା ନୁହେଁ ସଂସ୍କୃତ ଭାଷାରେ ସୁଦ୍ଧା ବହୁ ରମଣୀୟ ଓ ପାଣ୍ଡିତ୍ୟ ପୂର୍ଣ୍ଣ କାବ୍ୟକବିତା ରଚନା କରିଛନ୍ତି।

ସ୍ତବ, ସ୍ତୁତି, ପ୍ରାର୍ଥନା, ଜଣାଣ, ନକ୍ଷତ୍ରମାଳା, ଶ୍ଲୋକ, କବଚ ମାଳିକା, ଦଣ୍ଡକ, ଧନ୍ଦା, ପ୍ରହେଳିକା, ରହସ୍ୟ ପ୍ରଶ୍ନର ଉତ୍ତର, କବିତା, ଚମ୍ପୂ, ଗୀତି କବିତା ଋତୁ ବର୍ଣ୍ଣନା

ଆଦି ବହୁ ବିଭାଗରେ ତାଙ୍କ କବିତା ସମୂହକୁ ଅନ୍ତର୍ଭୁକ୍ତ କରାଯାଇପାରେ। ରାଗରାଗିଣୀ, ତାଳ ଲୟ ଆଦି ଉପରେ ତାଙ୍କର ପ୍ରଚୁର ଜ୍ଞାନ ଥିବାରୁ ଖରହର ପ୍ରିୟ, ବେହାଣ, ମାଳବଗୌଡ଼ା, କଲ୍ୟାଣୀ, ପାନ୍ତ ବରାଡ଼ି, ଅମ୍ବାରି, ହିନ୍ଦୁସ୍ଥାନୀ, ମୋହନା, କାମୋଦୀ, ପେଡ଼ି, ସାବେରୀ, ଆଷାଢ଼ ଶୁକ୍ଳ, କଲ୍ୟାଣ ଆହାରୀ, ଧନାଶ୍ରୀ, ସୌରାଷ୍ଟ୍ର, ମୁଖାରୀ ଭଳି ବହୁ ଅଧୁନାଲୁପ୍ତ ରାଗରାଗିଣୀ ପ୍ରୟୋଗ ତାଙ୍କ ସୃଷ୍ଟି ସମୂହକୁ ଋଦ୍ଧିମନ୍ତ କରିଛନ୍ତି। ତାଙ୍କର କବିତା ସମୂହ ଆମର  ପ୍ରାଚୀନ ଧର୍ମଦର୍ଶନ ପୁରାଣ ସାହିତ୍ୟକୁ ଆଧାର କରି ରଚିତ। ତେଣୁ ଏହା ଅତ୍ୟନ୍ତ ରସପୂର୍ଣ୍ଣ ଓ ସୁଖପାଠ।

## ସରସଗୀତାବଳି (୧୯୨୮):-

କବି ଅବସର ସମୟରେ କ୍ଷୁଦ୍ର କବିତା, ସ୍ତୁତି, ସ୍ତୋତ୍ର, ପଦ୍ୟ, ଗଦ୍ୟ, ଅଷ୍ଟକ, ପଞ୍ଚକ, ଖଣ୍ଡିତା, ଚୌପଦୀ ଆଦି ଯାହା ଲେଖୁଥିଲେ ସେଗୁଡ଼ିକୁ ତାଙ୍କର ଅବହେଳା ବଶତଃ ନଷ୍ଟ ହୋଇଯାଉଥିଲା। ତାଙ୍କର କୁଳ ପୁରୋହିତ ପଣ୍ଡିତ ନୀଳମଣି ରଥଶର୍ମା ଏହାକୁ ପୁସ୍ତକାକାରରେ ସଂକଳନ କରି ସରସଗୀତାବଳି ନାମ ଦେଇଥିଲେ। ଏହା ନିରୋଳା ଆଦି ରସାତ୍ମକ ରଚନା। ବୈଷ୍ଣବୀୟ ଚିନ୍ତା ଚେତନାରେ କବିତା ଗୁଡ଼ିକ ସମୃଦ୍ଧ। ଗୋପାଳକୃଷ୍ଣଙ୍କ କବିତା ସମୂହର ଛାନ୍ଦସିକତାର ସ୍ପର୍ଶ କବିତା ଗୁଡ଼ିକରେ ଅନୁଭୂତ ହୁଏ। ଉଦାହରଣ ସ୍ୱରୂପ:-

ଶୁଣରେ ରମଣୀମଣି   ମୋ ବିନୟ ବାଣୀକି
କେତେ ତପେ ଲଭିଅଛି ସେବି ଶୁଳପାଣିକି
ଅକାରଣେ ମାନକରି  କାହିଁକି କନକ ଗୋରୀ
ଭୂଷା ତେଜି ବସିଅଛୁ ଅନାଇ ଧରଣୀକି।

କେବଳ ରସାପ୍ଳୁତ ଭାବ ଓ ମାନ ଅଭିମାନ ପ୍ରେମ ପ୍ରଣୟ ଅନୁରାଗ ପୂର୍ବରାଗ ସମ୍ବଳିତ ରଚନାରେ ସରସ ଗୀତାବଳୀ ସମୃଦ୍ଧ ନୁହେଁ ଏଥିସହ କେତେ ଢଗ ଢମାଳି, ପ୍ରଶ୍ନୋତ୍ତର, ଜ୍ଞାନଗର୍ଭକ କ୍ଷୁଦ୍ର କ୍ଷୁଦ୍ର ରଚନା ରହିଛି। ଯେପରି କନ୍ଦର୍ପର ପଞ୍ଚଶରରେ ସୁଶୋଭିତ ଫୁଲଗୁଡ଼ିକ ସଂପର୍କରେ କହିଛନ୍ତି:-

"କଞ୍ଜ ବଦନର ଚୁତ ନାକର ନୀଳୋତ୍ପଳ ଲୋଚନ ଯୁଗଳର / ନବମାଳିକା କଳିକା ଦାନ୍ତର ଅଶୋକ କୁସୁମ ବରାଧରର / ହେବାରୁ ସମାନ / ସେ ଫୁଲଙ୍କୁ ଶର କଲା ମଦନ"

**ଢଗଢମାଳୀ**–ତିନିବର୍ଣ୍ଣେ ନାମ ରତି ପତିର
ସେ ପୁଣି ପ୍ରାର୍ଥୀ ହେବ ଜଳଦର
ପ୍ରଥମ ବର୍ଣ୍ଣ ଲୋପେ ନାଟ୍ୟସ୍ଥାନ
ଦ୍ୱିତୀୟେ ଲୋପେ ସହବାସ ଜାଣ

ତୃତୀୟ ଲୋପରେ

ବଳବୋଲି ଅର୍ଥ ରାଜେ ଲୋକରେ।

ଉତ୍ତର:-ସାରଙ୍ଗ।

ଏହିପରି ଅନେକ ପ୍ରହେଳିକା ଧର୍ମୀ ରଚନାରେ ସରସ ଗୀତାବଳି ରସବନ୍ତ ହୋଇଛି। ସନ୍ନିବେଶିତ କବିତା ଗୁଡ଼ିକ ଶବ୍ଦ ଅର୍ଥର ବେଶ୍ କସରତ ପରିଲକ୍ଷିତ ହୋଇଥାଏ। କବିଙ୍କର କବିତ୍ୱ ଓ ପାଣ୍ଡିତ୍ୟ ସମ୍ବଳିତ ତାଙ୍କର ନିମ୍ନ କବିତାଟି ଦ୍ରଷ୍ଟବ୍ୟ।

କବି ବନ୍ଦ୍ୟ! ଘେନ ମୋର ବିନୟ

ଚକ୍ରଧର! ମୋର ହୋଇ ସଦୟ

କ୍ରମେ ନେଇ ଚିତ୍ତ ହଂସକୁ ମୋ'ର

ଶ୍ରୀ ଶ ରଖ ପଦ କଞ୍ଜରେ ତୋର।

ଏତେ ସେ ମାଗଇ। ଦ୍ୱିତୀୟ ବର୍ଣ୍ଣ ଯା ନାମ ରାଜଇ।

ଏଠାରେ ଦ୍ୱିତୀୟ ବର୍ଣ୍ଣରେ କବି ବିକ୍ରମେଶ ଶବ୍ଦ ଆସୁଛି। ବିକ୍ରମେଶ ତାଙ୍କ ଆରାଧ୍ୟ ଦେବତା। ଚକ୍ରଧରଙ୍କୁ ପାଦପଦ୍ମରେ ଚିତ୍ତ ହଂସକୁ ରଖିବାପାଇଁ ଅନୁରୋଧ କରିଛନ୍ତି।

ଏହାଛଡ଼ା ଲୋକୋକ୍ତି କ୍ରମରେ 'ଅ' ଠାରୁ 'କ୍ଷ' ପର୍ଯ୍ୟନ୍ତ ଶବ୍ଦାନୁସାରେ କେତେଗୁଡ଼ିଏ ରୁଢ଼ି ବା ପ୍ରବଚନ ଏଥିରେ ସନ୍ନିବେଶିତ ହୋଇଛି। ଆମ ଭାଷାର ଅଳଙ୍କାର ହେଉଛି ଢଗଢମାଳି। କ୍ରମ ଅପସୃୟମାନ ଭାଷାର ଏହି ବର୍ଣ୍ଣିଳ ବିଭବଙ୍କୁ ଲୋକମୁଖରୁ ଆଣି ସେ ସୁରକ୍ଷିତ କରିଛନ୍ତି।

**ଭକ୍ତିରତ୍ନମାଳିକା:-** ନାମକଣରୁ ଏହା ଏକ ଭକ୍ତି ରସାତ୍ମକ କବିତା ସଂକଳନ ବୋଲି ନିଧାର୍ଯ୍ୟ କରିହୁଏ, ଏହା ମଧ୍ୟ କୁଳ ପୁରୋହିତ ପଣ୍ଡିତ ନୀଳମଣି ରଥଶର୍ମାଙ୍କ ଦ୍ୱାରା ସଂଗୃହୀତ ଓ ପ୍ରକାଶିତ। ଉଭୟ ସଂସ୍କୃତ ଓ ଓଡ଼ିଆ ଭାଷାରେ ବିଭିନ୍ନ ଦେବଦେବୀଙ୍କର ସ୍ତୁତି ବନ୍ଦନା, ଚଉତିଶା, କବଚ, ଚୌପଦୀ ଆଦି ମିଶି ୬୪ ଗୋଟି ସୃଷ୍ଟି ରହିଛି। ଏହାର ପ୍ରତିଟି ପୃଷ୍ଠା ଭଗବତ୍ ପ୍ରେମରେ ଭାବସ୍ନିଗ୍ଧ। ଏଥିରେ ଥିବା ସଂସ୍କୃତ ରଚନାଗୁଡ଼ିକ ଅତିଶୟ ପାଣ୍ଡିତ୍ୟପୂର୍ଣ୍ଣ। ଏଥିରୁ କବିଙ୍କର ସଂସ୍କୃତ ଭାଷାରେ ବ୍ୟୁତ୍ପତ୍ତିଜ୍ଞାନ ସଂପର୍କରେ ସୂଚନା ମିଳିଥାଏ।

'କ' ଠାରୁ 'କ୍ଷ' ବର୍ଣ୍ଣ ଅନୁକ୍ରମରେ ବିକ୍ରମ ଦେବ କେଶବ ଚଉତିଶା ରଚନା କରିଛନ୍ତି। ସେହିପରି ବସ୍ତ୍ର ମାଳିକାରେ କୃଷ୍ଣଙ୍କ ମହିମାଗାନ କରାଯାଇଛି। ଅନିତ୍ୟ ଅସାର ସଂପର୍କରେ ସୂଚନା ଦେଇ ସେଥିରୁ ମୁକ୍ତିର ରାସ୍ତା ଏକମାତ୍ର ଶ୍ରୀକୃଷ୍ଣଙ୍କ ପ୍ରତି ପ୍ରଗାଢ଼ ଅନୁରକ୍ତି ବୋଲି ସେ ସଂସାରୀ ଜନକୁ ଉପଦେଶ ଦେଇଛନ୍ତି। ଏହାଛଡ଼ା ତାଙ୍କର ଏକ କବିତାରେ ସେ ବିଭିନ୍ନ ଧର୍ମର ବୈଶିଷ୍ଟ୍ୟ ଦର୍ଶାଇ କହିଛନ୍ତି:-

ଅଦ୍ୱୈତ ଜ୍ଞାନ ମୈମାଂସେ କର୍ମ ଦ୍ୱୈତେଭକ୍ତି
ଇସ୍ଲାମରେ ସମର୍ପଣ ବୌଦ୍ଧେ ତ୍ୟାଗ ଶକ୍ତି
ପବିତ୍ରତା ଜନେ ସାଧୁତା ଇହୁଦୀଙ୍କ ମତେ
ଏ ମତମାନଙ୍କରେ ଏ ନବକ ପ୍ରଧାନ
ସାଧାରଣ ଧର୍ମମାନ ସବୁରେ ସମାନ
(ରଚନାଳି-୧-ପୃ.୫୮)

କେବଳ ଭକ୍ତି ରସାତ୍ମକ କବିତାରେ କବିଙ୍କର ପାଣ୍ଡିତ୍ୟ ପ୍ରତିଭା ଯେ ନିହିତ ତା ନୁହେଁ ପ୍ରକୃତି ପ୍ରେମୀ କବି ବିକ୍ରମ ପ୍ରକୃତିର ଅଫୁରନ୍ତ ସୌନ୍ଦର୍ଯ୍ୟରେ ଭାବାପ୍ଲୁତ ହୋଇ ସେ ପ୍ରକୃତିର ଷଡ଼ ଋତୁର ବର୍ଣ୍ଣନା କରିଛନ୍ତି। ସେଥିରେ ମଧ୍ୟ ତାଙ୍କର କବିତ୍ୱ ଓ ପ୍ରତିଭା ସ୍ପଷ୍ଟ ବାରି ହୋଇପଡ଼େ। ଉଦାହରଣ ସ୍ୱରୂପ ବର୍ଷାକାଳ ବର୍ଣ୍ଣନାରେ କବି କହନ୍ତି:-

"ବିଦେଶୀ ବିଯୋଗୀ ଖେଦପ୍ରଦ ବର୍ଷାକାଳ
ଆଗତ ସେ କଳକଣ୍ଠ କୁଳ କଣ୍ଠ କାଳ
ନଭେ ନୀଳ ମେଘ ଘୋଟି ଆଛାଦେ ଭୂମିକି
କରେ ଦୁର୍ଦ୍ଦିନ ଦିନକୁ ଅନ୍ଧାର ରାତିକି" (ରଚନାଳି ୨ୟ ପୃ.୧୫୧)

ସମାଜ ଓ ଜୀବନର ବିଭିନ୍ନ ବିଭାବକୁ ଆଧାର କରି ସେ ବହୁ କବିତା ରଚନା କରିଛନ୍ତି। ସଂସ୍କାରକ ଭାବରେ ସମାଜକୁ ସୁଧାରିବାପାଇଁ ବ୍ୟଙ୍ଗକବିତା ରଚନାରେ ମଧ୍ୟ ସେ ଲେଖନୀ ଚାଳନା କରିଛନ୍ତି।

ହଳଧରେ ହେଲେ କଲମ ଧର
ଦଣ୍ଡୁଆଏ ହେଲେ ପଣ୍ଡିତ ପ୍ରବର
ଅକୁଳିନେ ହେଲେ ପ୍ରଭୁ ପ୍ରବର
କୁଳୀନେ ହୋଇଲେ ତାଙ୍କ ଚାକର
ଏମାନେ ନିକର
କଳି ମହିମା ବୋଲି ମନେ କର। (ରଚନାଳି ୧ମ, ପୃ.୩୩)

କବି ବିକ୍ରମ ବର୍ମାଙ୍କ କବିତା ଗୁଡ଼ିକ ପ୍ରାୟତଃ ରୀତିଯୁଗୀୟ କାବ୍ୟକବିତା ପରି ଛନ୍ଦ ଅଳଙ୍କାର ବିଭୂଷିତା ଓ ବୈଷ୍ଣବୀୟ ପ୍ରେମରେ ପ୍ଲାବିତ। କଥିତ ଭାଷା ସହ ଶିଷ୍ଟ ଭାଷାର ପ୍ରୟୋଗ ତାଙ୍କ କବିତାର ଅନ୍ୟତମ ବିଶେଷତ୍ୱ। ବିନୟୀ କବି ତାଙ୍କ 'ମୋ କବିତା ଶୀର୍ଷକ' କୃତିରେ କହିଛନ୍ତି-

"ମୁଁ ମୋ ବଂଶ ଗୁରୁତ୍ୱରୁ କିମ୍ବା ଧନ ଗୁରୁତ୍ୱରୁ ଲୋକ ବିଦିତ ହୋଇପାରିଲି ନାହିଁ। ଯେପରି ହେଉ ନାମ କମାଇବା ତ ଆବଶ୍ୟକ। ଯେନତେନ ପ୍ରକାରେଣ ପ୍ରସିଦ୍ଧି

ପୁରୁଷୋତ୍ତବେତ୍। ସେହି ହେତୁରୁ ପ୍ରସିଦ୍ଧି ଲଭିବା ପାଇଁ କବି ହେଲି।" (ରଚନାଳି ୨ୟ) (ପୃ.୧୭୬)

**ଅନୁସୃଦିତ କାବ୍ୟକବିତା:-**

**ଭଗବଦ୍ ଗୀତା ମହାତ୍ମ୍ୟ:-**ବିକ୍ରମଦେବ ବର୍ମା ଅନ୍ୟ ଭାଷାରେ ସାହିତ୍ୟର ଉପାଦେୟ ଗ୍ରନ୍ଥଗୁଡ଼ିକ ଅନୁବାଦ କରି ଓଡ଼ିଆ ଭାଷା ସାହିତ୍ୟକୁ ସମୃଦ୍ଧ କରିଛନ୍ତି। ଏଥି ମଧ୍ୟରେ ଭଗବଦ୍‌ଗୀତା ମହାତ୍ମ୍ୟ ଅନ୍ୟତମ। ପୁସ୍ତକଟି ନବାକ୍ଷରୀ ଛନ୍ଦରେ ରଚିତ। ସଂସ୍କୃତ ଭଗବଦ୍ ଗୀତାର ଏହା ମର୍ମାନୁବାଦ। ବିକ୍ରମଦେବ ବର୍ମାଙ୍କର ଏହା ପ୍ରଥମ ପ୍ରକାଶିତ ପୁସ୍ତକ।

**ଶ୍ରୀ ଗୋବିନ୍ଦ ମଞ୍ଜରିକାବଳି:-**

ପୁସ୍ତକଟି ଶ୍ରୀମତ୍ ଶଙ୍କରାଚାର୍ଯ୍ୟଙ୍କର ମୋହ ମୁଦ୍‌ଗରର ଓଡ଼ିଆ ଅନୁବାଦ। ମୂଳ ସଂସ୍କୃତ ଶ୍ଳୋକ ବୃତ୍ତରେ ଓଡ଼ିଆ ଭାଷାରେ ଲିଖିତ ହୋଇଛି। କବିତା ରଚନା ସମୟରେ ସେ ସଂସ୍କୃତ ଭାଷା ସହ ଓଡ଼ିଆ ଭାଷାକୁ ସମକକ୍ଷ କରି ଓଡ଼ିଆ ଭାଷାର ମର୍ଯ୍ୟାଦା ବୃଦ୍ଧି କରିଛନ୍ତି।

**ଶ୍ରୀ ତୁଳସୀ ବିକ୍ରମ ରାମାୟଣ:-(୧୯୨୬)**

ମହାପୁରୁଷ ତୁଳସୀ ଦାସଙ୍କ ହିନ୍ଦି ରାମାୟଣକୁ ଓଡ଼ିଆରେ ଅନୁବାଦ କରିବାର ପ୍ରବଳ ଇଚ୍ଛାକୁ ଦମନ କରି ନପାରି ସେ ଏହାର ଅନୁବାଦ ଆରମ୍ଭ କରିଦେଇଥିଲେ। କିନ୍ତୁ ଠିକ୍ ସେତିକିବେଳକୁ ଅନ୍ୟ ଜଣେ କବି ତୁଳସୀଦାସଙ୍କ ରାମାୟଣରୁ ଓଡ଼ିଆ ଅନୁବାଦ କରି ତାହା ପ୍ରକାଶ କରିଦେବାରୁ ସେ ସେଥିରୁ ବିରତ ରହିଥିଲେ। ସେହି ଅସଂପୂର୍ଣ୍ଣ କାବ୍ୟର କିୟଦଂଶ ନଷ୍ଟ ହୋଇଯିବାରୁ ସେ ଅବଶିଷ୍ଟ କେବଳ ଆଦିକାଣ୍ଡକୁ ସଂଗ୍ରହ କରି ପ୍ରକାଶ କରିଥିଲେ। ଚଉଦ ଅକ୍ଷର ବିଶିଷ୍ଟ ଏହି କାବ୍ୟ ୨୭୧୮ ପଦ ମଧ୍ୟରେ ରଚିତ। ଏହାର ନାମ ଦେଇଥିଲେ ତୁଳସୀ ବିକ୍ରମ ରାମାୟଣ।

**'ଇଶାବାସୋପନିଷଦ'ର** ଅନୁବାଦ ନିଜସ୍ୱ ଶୈଳୀରେ କରିଛନ୍ତି ବିକ୍ରମଦେବ ବର୍ମା। ଏହାର ସରଳ ସାବଲୀଳ ଛନ୍ଦ ବେଶ୍ ହୃଦୟଗ୍ରାହୀ। ଉଦାହରଣ ସ୍ୱରୂପ:-

"ଇଶାବାସମିଦଂ ସର୍ବଂ ଯତ୍ କିଞ୍ଚିତ୍ ଜଗତ୍ୟାଜଗତ୍
ତେନ ତ୍ୟକ୍ତେନ ଭୂଞ୍ଜୀଥା ମାଗୃଧଃ କସ୍ୟ ସିଦ୍ଧନମ୍।"
ଓଡ଼ିଆ ଅନୁବାଦ:-
ସର୍ବଦ୍ରବ୍ୟ ଏ ଜଗତରା ଈଶ୍ୱର ମୟଟି ନିକର।
ତେଣୁ କାହିଁକି ଶକ୍ତ ନୋହି। ଜୀବନ ଯାପ ସୁଖୀ ହୋଇ
ପରସଂପତ୍ତି ସଂଗ୍ରହଣ। କରଣେ ନ ବଳାଅ ମନ (ରଚନାଳି ୨ୟ ଭାଗ ପୃ.୬୬)

ବହୁ ପ୍ରତିଷ୍ଠିତ ସଂସ୍କୃତ କବିଙ୍କର ନୀତିବାଣୀ ଶ୍ଳୋକ ଜ୍ୟୋତିଷ ଶାସ୍ତ୍ର ଆଦି ସେ ଓଡ଼ିଆରେ ଅନୁବାଦ କରିଛନ୍ତି। ଜ୍ୟୋତିଷ ଶାସ୍ତ୍ରରେ ପାରଦର୍ଶିତା ହାସଲ କରିଥିବା ଶ୍ରୀ ବିକ୍ରମ ଆର୍ଯ୍ୟଭଟ୍ଟଙ୍କର କେତେକ ଜ୍ୟୋତିଷୀ ଶ୍ଳୋକକୁ ଓଡ଼ିଆରେ ଅନୁବାଦ କରିଥିଲେ। ସଂସ୍କୃତ ଭାଷାର ଦିଗ୍‌ନାଗଙ୍କ କବିଙ୍କ କୁନ୍ଦମାଳା ନାଟକକୁ ଉତ୍କଳ କୁନ୍ଦମାଳା ନାମରେ ଓଡ଼ିଆ ଭାଷାକୁ ଅନୁଦିତ ହୋଇଥିବା ପୂର୍ବରୁ ଆଲୋଚନା ହୋଇସାରିଛି।

**'କାଦମ୍ବରୀ କଥାସାର'** ମହାକବି ବାଣଭଟ୍ଟଙ୍କ କାଦମ୍ବରୀ କାବ୍ୟର ଗଦ୍ୟାନୁବାଦ। ଏହା ଗଦ୍ୟ ହେଲେ ହେଁ ତାର ଲାଳିତ୍ୟ ପୂର୍ଣ୍ଣ ଶବ୍ଦ ସଂଯୋଜନା କବିତାର ଅଧିକ ନିକଟତ କରିଛି। ଏହାକୁ ଗଦ୍ୟକାବ୍ୟ କହିଲେ ଅସଂଗତ ହେବନାହିଁ ବୋଲି ଚିନ୍ତାମଣି ମହାନ୍ତି ବ୍ୟକ୍ତ କରନ୍ତି। କବି ବିକ୍ରମଦେବ ବର୍ମା ଏହାକୁ ଗଦ୍ୟପଦ୍ୟମୟଂ କାବ୍ୟ ବୋଲି କହୁଥିଲେ। କାଦମ୍ବରୀ ହେମକୁଟ ରାଜା ଚିତ୍ରରଥଙ୍କ କନ୍ୟା। ସେ ନିଜର ସତୀତ୍ୱ ବଳରେ ଉଜ୍ଜୟିନୀର ରାଜା ତାରାପୀଡ଼ଙ୍କ ପୁତ୍ର ଚନ୍ଦ୍ରପୀଡ଼ଙ୍କୁ ବିବାହ କରିବାରେ ସମର୍ଥ ହୋଇଥିଲେ ତାହା ବର୍ଣ୍ଣିତ ହୋଇଛି। ଗୋଟିଏ ଶୁକପକ୍ଷୀ ଶୁଦ୍ରକ ମହାରାଜାଙ୍କ ସମ୍ମୁଖରେ ଏହି କାଦମ୍ବରୀ କଥା ସାର ବୟାନ କରୁଥିବା କ୍ରମରେ ଲିଖିତ ହୋଇଛି।

**ଚନ୍ଦ୍ରହାସ ଚରିତ:-** 'ଚନ୍ଦ୍ରହାସ ଚରିତ' ଗଳ୍ପ ବିକ୍ରମଦେବ ବର୍ମାଙ୍କର ମୌଳିକ ଗଳ୍ପ ନୁହେଁ। ପୁରାଣର ବିଷୟ ଚନ୍ଦ୍ରହାସ ବିବାହ କାହାଣୀ ଉପରେ ଆଧାରିତ। ଦୁର୍ଭାଗ୍ୟ ବଶତଃ ଚନ୍ଦ୍ରହାସ ନାମକ ରାଜକୁମାର ପିତୃମାତୃହୀନ ହୋଇ ଜଣେ ଦାସୀ ହାତରେ ପରିପାଳିତ ହୋଇଛି। ତାଙ୍କୁ ମାରିବାପାଇଁ ମନ୍ତ୍ରୀ ଦୁଷ୍ଟବୁଦ୍ଧି ବହୁତ ଷଡ଼ଯନ୍ତ କରିଛି ମାତ୍ର ଘାତକମାନେ ତାର କାଣି ଆଙ୍ଗୁଠି କାଟି ତାକୁ ମାରିଦେବାର ମିଥ୍ୟା ସମ୍ବାଦ ଦେଇଛନ୍ତି। ଶବର ପଲ୍ଲୀରେ ଆଙ୍ଗୁଠି ନଥିବା ପିଲାକୁ ଦେଖି ତାକୁ ରାଜକୁମାର ବୋଲି ଚିହ୍ନି ପାରିଛନ୍ତି। ତା ହାତରେ ଚିଠିଟିଏ ଲେଖି ତାକୁ ବିଷ ଦେଇ ମାରିବା ପାଇଁ ଚିଠିଟିଏ ଲେଖି ପଠାଇଛନ୍ତି।

ବାଟରେ କ୍ଳାନ୍ତ ହୋଇ ସେ ଶୋଇଥିବା ସମୟରେ ମନ୍ତ୍ରୀ ଝିଅ ବିଷୟା ପୁଅଟିର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇଛି। ତା କମରରୁ ଚିଠି ଖୋଲି ପଢ଼ି ସେ ତା ବାପାଙ୍କର ନିଷ୍ଠୁରତାରେ ମର୍ମାହତ ହୋଇଛି। ସେ ଚିଠିଟିରେ ନିଜ ଆଖିରୁ ଅଞ୍ଜନ ନେଇ ବିଷ ସହ 'ୟା' ଓ ମାରି ପୂର୍ବରୁ କୁ ଲେଖି ଦେଇଛି। ଚିଠିଟିକୁ ନିଦ୍ରିତ ରାଜକୁମାରଙ୍କ କମର ପଟିରେ ରଖିଦେଇଛି। ଯୁବକଟି ସେହି ଚିଠି ମନ୍ତ୍ରୀପୁଅକୁ ଦେବାପରେ ମନ୍ତ୍ରୀପୁଅ ନିଜ ଭଉଣୀ ବିଷୟା କୁମାରୀ ସହ ରାଜାପୁଅର ବିବାହ କରିଦେଇଛି। ତଥାପି ମନ୍ତ୍ରୀ ଏହି ରାଜପୁଅକୁ ମାରିବା ଚକ୍ରାନ୍ତରେ ନିଜ ପୁଅକୁ ହରେଇଛି।

**ଗ୍ରୀକ୍ ପୁରାଣ କଥା:** ଏହି ଗଳ୍ପଟି ଗ୍ରୀକ୍ ପୁରାଣରୁ ଆସିଛି। ଗ୍ରୀକ୍‌ର ପ୍ରେମର ଦେବତା କ୍ୟୁପିଡ୍ ଓ ସୁନ୍ଦରୀ ସୈକ୍‌ର ପ୍ରେମ ବିଚ୍ଛେଦ ଓ ପ୍ରେମ ମାର୍ଗରେ ଥିବା

ଈର୍ଷା, ଅସୂୟା ଓ ପ୍ରତିବନ୍ଧକୁ ଅତି ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି। କାହାଣୀର ଗତିଶୀଳତା କେବଳ ଗ୍ରୀକ୍ ଉପାଖ୍ୟାନ ସର୍ବସ୍ୱ ପରି ମନେହୁଏ ନାହିଁ ବରଂ ଆମ ଭାରତୀୟ ଲୋକ କଥାର ସମନ୍ୱୟରେ ଗଳ୍ପଟି ଗତିଶୀଳ ହେବାପରି ପରିଲକ୍ଷିତ ହୁଏ। ଗଳ୍ପଟି ଗ୍ରୀକ୍ ପୁରାଣ ଉପାଖ୍ୟାନର ଆକ୍ଷରିକ ଅନୁବାଦ ନୁହେଁ ଏହା ଭାବାନୁବାଦ ହୋଇଥିବାରୁ ଗଳ୍ପଟି ବେଶ୍ ହୃଦୟସ୍ପର୍ଶୀ ହୋଇପାରିଛି।

ଗଳ୍ପଗୁଡ଼ିକ ଅନୁବାଦ ହେଲେ ସୁଦ୍ଧା ଗ୍ରାମ୍ୟଶୈଳୀରେ ପରିବେଷଣ, ଶିଷ୍ଟ ଓ ଗ୍ରାମ୍ୟ ଶବ୍ଦର ସମ୍ମିଶ୍ରଣ, ଉତ୍କଣ୍ଠା ଦ୍ୱନ୍ଦ୍ୱ ଆଦିର ସୁନ୍ଦର ଉପସ୍ଥାପନ ହୋଇପାରିଛି। ଗଳ୍ପ କଥନ ସମୟରେ ଗାଳ୍ପିକଙ୍କର ନିଜସ୍ୱ ଚିନ୍ତା ଦର୍ଶନ, ନୀତିବୋଧ, କର୍ମଫଳର ବିଶ୍ୱାସ ଆଦି ସ୍ୱତଃ ପ୍ରତିଫଳିତ ହୋଇଛି। ଗାଳ୍ପିକଙ୍କ ପାଣ୍ଡିତ୍ୟ, ବହୁ ଶାସ୍ତ୍ର ଦର୍ଶିତା ଓ ପୌରାଣିକ ଜ୍ଞାନ ଗଳ୍ପ ଗୁଡ଼ିକୁ ମର୍ଯ୍ୟାଦା ସମ୍ପନ୍ନ କରିଛି।

## କଥାକାର ବିକ୍ରମ

ଓଡ଼ିଆ ଗଳ୍ପ ସାହିତ୍ୟକୁ ଗାଳ୍ପିକ ବିକ୍ରମ ଦେବ ବର୍ମାରେ ଏକ ଅବଦାନ ସର୍ବସ୍ୱୀକୃତ। ୧୯୩୦ ଖ୍ରୀଷ୍ଟାବ୍ଦ ପରେ ସେ ତାଙ୍କର ଗଳ୍ପମାନ ରଚନା କରିଛନ୍ତି। ସେତେବେଳକୁ ଓଡ଼ିଆ ଗଳ୍ପ ସାହିତ୍ୟ ଗୋଟିଏ ନିର୍ଣ୍ଣାୟକ ଭୂମିକା ନେଇ ସାରିଲାଣି। ସାହାଡ଼ା ସୁନ୍ଦରୀ କାଞ୍ଚନ କଥା ଅଥବା ବୁଢ଼ୀ ଅସୁରୁଣୀ କାହାଣୀ ସ୍ଥାନ ଆଧୁନିକ ଗଳ୍ପ ଗ୍ରହଣ କରିସାରିଲାଣି। ବିକ୍ରମଦେବ ବର୍ମା ମଧ୍ୟ ତତ୍କାଳୀନ ସମସାମୟିକ ଗଳ୍ପକଳାସୁ ବେଶ୍ ଅନୁଧ୍ୟାନ କରି ଗଳ୍ପ ରଚନା କରିଥିଲେ। କଳ୍ପନା ପରିବର୍ତ୍ତେ ଆମ ଚାରିପଟରେ ପ୍ରତି ମୁହୂର୍ତ୍ତରେ ଘଟୁଥିବା ଘଟଣାବଳୀକୁ ଆଧାର କରି ସେ କାହାଣୀମାନ ରଚନା କରିଥିଲେ। ତାଙ୍କ ଗଳ୍ପଗୁଡ଼ିକ ଯେ ନିଛକ ବାସ୍ତବତାର ଭିତ୍ତିଭୂମି, ସେ ସଂପର୍କରେ ସେ କହନ୍ତି- "ଏହା କେବଳ କଳ୍ପିତ ବିଷୟ ନୋହି, ସତେ ଚଳିଲା ବିଷୟ ଅଟେ"। (ବିକ୍ରମଦେବ ରଚନାଳି, ୧ମ ଭାଗ, ପୃ.୩୫୫) ତାଙ୍କର ଗଳ୍ପଗୁଡ଼ିକର ଚରିତ୍ର ସବୁ ହାତ ପାହାନ୍ତିର ଓ ସେମାନଙ୍କ ପରିସର ବର୍ତ୍ତମାନର ଅବିଭକ୍ତ ଜିଲ୍ଲା ଜୟପୁର କୋରାପୁଟ ମାଲ୍କାନାଗିରି, ନନ୍ଦପୁର, ମୋଟୁ, ଲକ୍ଷ୍ମୀପୁର ଏବଂ ଆସିକା ଗଞ୍ଜାମ ଓ ଆନ୍ଧ୍ର ପ୍ରଦେଶର କିଛି ଅଂଶ। ଘଟଣାଗୁଡ଼ିକ ସବୁ ଏଇ ପରିସର ମଧ୍ୟରେ ଥିବା ଚରିତ୍ର ଗୁଡ଼ିକର ନିତ୍ୟ ପ୍ରତିଦିନର ହସକାନ୍ଦ, ସୁଖଦୁଃଖ, ଗୌରବ ଅପମାନ ଓ ଘଟଣ ଅଘଟଣର କାହାଣୀ। ତାଙ୍କ ଅନୁବାଦ ଗଳ୍ପ ଗୁଡ଼ିକରେ ଅତିରଞ୍ଜନ ଓ ଅବାସ୍ତବତା କାହାଣୀ କଳ୍ପନାମାନ ଭରିରହିଛି। କିଛି ମୌଳିକ ସୃଷ୍ଟି ସଂପୂର୍ଣ୍ଣ ଅନୁଭବର କଥା କହନ୍ତି। ଏହି ଗଳ୍ପଗୁଡ଼ିକ ମଧ୍ୟରେ ପୁରୁଷୋତ୍ତମ ଚାତୁରୀ, ଗୋବରିଆ, ଗୁଣବତୀ, ପରୀ, ସୁଲକ୍ଷଣା, ଲଳିତା, ବାଳିକା ବିବାହ ଭୂତଭୟ, ପାପ ପରିଣାମ, ଭଣ୍ଡଧନୀ, ଗୋରୀର ଘରକରଣା ଆଦି ଗଳ୍ପ ପ୍ରଧାନ।

**ପୁରୁଷୋତ୍ତମ ଚାତୁରୀ** ଗଳ୍ପ ସର୍ବକାଳିକ ଆବେଦନରେ ପରିପୁଷ୍ଟ। ବୃଦ୍ଧ ପିତାମାତାଙ୍କୁ ପୁତ୍ର ଓ ପୁତ୍ରବଧୂମାନଙ୍କ ଉପେକ୍ଷା ଅବହେଳା ଏକ ଅତି ଅସୁସ୍ଥ ପରମ୍ପରା। ବୃଦ୍ଧ ପିତାମାତାଙ୍କୁ ସୁନ୍ଦରୀ ପତ୍ନୀ ବୁଦ୍ଧିରେ ପଡ଼ି ପ୍ରତ୍ୟାଖ୍ୟାନ କରିବାବେଳେ ସେମାନେ ବୁଝନ୍ତି ନାହିଁ ଯେ ସେମାନଙ୍କର ବି ଦିନେ ବାର୍ଦ୍ଧକ୍ୟ ଆସିବ ଓ ସେମାନେ ପୁତ୍ର ଓ ପୁତ୍ର ବଧୂଙ୍କ ଆଶ୍ରୟରେ ରହିବେ। ଏହିଭଳି ଏକ ଅନୁଭବ ସିଦ୍ଧ କାହାଣୀ ହେଉଛି ପୁରୁଷୋତ୍ତମ ଚାତୁରୀ ଗଳ୍ପ।

ପୁରୁଷୋତ୍ତମ ପିତାମାତା ତାର ଜେଜେବାପାଙ୍କୁ ପରିତ୍ୟକ୍ତ ଘରେ ଛିଣ୍ଡାଲେଙ୍ଗଡ଼ା ପିନ୍ଧିବାକୁ ଓ ଖାଇବାକୁ ମାଟି ସରାଟିଏ ଦେଇ କୁକୁର ଠୁଁ ବି ହୀନ କରି ରଖିବା ଦେଖି ଯନ୍ତ୍ରଣା ଜର୍ଜରିତ ହୋଇଯାଏ। ତେଣୁ ଦିନେ ଚାତୁରୀ ପ୍ରକାଶ କରି ଜେଜେ ବାପାଙ୍କୁ ମାଟି ସରାଟି ଭାଙ୍ଗିବାକୁ କହେ। ଜେଜେ ବାପା ତାହା କରନ୍ତେ ସେ ତାଙ୍କୁ କୃତ୍ରିମ ଗାଳି ଦେଇ କହେ- " ସେ ସରା ଭାଙ୍ଗିଦେଲୁ? ତୁ ଖାଉଥିବା ସରାରେ ତୋ ପୁଅ ଖାଇବ ବୋଲି ତୁ କ'ଣ ଜାଣିନାହୁଁ କି? ଏଣିକି ନନା କାହିଁରେ ଖାଇବେ? ଏହାପରେ ପୁଅ ବୋହୂ ଭୂଲ୍ ବୁଝିପାରି ବୃଦ୍ଧଙ୍କୁ ଆଦରଯତ୍ନ କରିଛନ୍ତି।

ବିକ୍ରମଦେବଙ୍କ **'ଗୋବରିଆ'** ଗଳ୍ପ ଆମର ଏକ ମହାନ୍ ପାରମ୍ପରିକ ଗଳ୍ପର ଆଧାରରେ ଲେଖାଯାଇଛି। ରାମାୟଣକାର ବାଲ୍ମିକିଙ୍କ ପୂର୍ବରୁ ଦସ୍ୟୁ ରତ୍ନାକର ଯେପରି ତାର ପାପ ପଙ୍କିଳ ଜୀବନକୁ ଋଷିମାନଙ୍କ ଉପଦେଶରେ ପରିତ୍ୟାଗ କରିଥିଲା ଗୋବରିଆର ମଧ ଠିକ୍ ସେହି ଉପାୟରେ ଚୈତନ୍ୟୋଦୟ ହୋଇଛି। ମାଲ୍‌କାନଗିରି ଅଞ୍ଚଳରେ ସେ ଯେଉଁ ଲୁଟ୍‌ତରାଜ୍ ହତ୍ୟା କରି ଧନ ଅର୍ଜନ କରୁଥିଲା ସବୁ ତା ପରିବାର ପ୍ରତିପୋଷଣ ପାଇଁ, କିନ୍ତୁ ଏଥିପାଇଁ ସେ ଯେଉଁ ପାପ ଅର୍ଜନ କରୁଥିଲା ସେଥିରେ ତା ପରିବାର ଲୋକେ ଭାଗି ହେବେ ନାହିଁ ବୋଲି ଜଣେ ସନ୍ୟାସୀଙ୍କ ଠାରୁ ଶୁଣିବା ପରେ ଗୋବରିବା ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଛି।

**ଗୁଣବତୀ ପତ୍ନୀ**

ଏହି ଗଳ୍ପଟି ସମାଜର ଏକ ସର୍ବକାଳିନ ସମସ୍ୟା ଉପରେ ଆଧାରିତ। ନାରୀମାନଙ୍କୁ ସମ୍ପ୍ରତି ସଶକ୍ତକରଣ ପାଇଁ ଯୋଜନା ପ୍ରଣୟନ ଅପ୍ରତିହତ ରହିଛି। ତଥାପି ସ୍ୱାମୀମାନଙ୍କ ଅତ୍ୟାଚାରର ବହୁ ଲୋମହର୍ଷକ କାହାଣୀ ନିତ୍ୟ ପ୍ରତିଦିନ ଆମ ଆଗରେ ଉଦ୍‌ଭାସିତ ହେଉଛି। କିନ୍ତୁ ପ୍ରକୃତ ଗୁଣବତୀ ପତ୍ନୀ ଧୈର୍ଯ୍ୟସହିଷ୍ଣୁତା ସେବା ତ୍ୟାଗ ବଳରେ ପରିବାରରେ ଯେତେବଡ଼ ସମସ୍ୟା ହେଉ ପଛେ ତାହା ଅଚିରେ ଅତିକ୍ରମ କରିପାରିବ। ଏହି ଗଳ୍ପରେ ପୂର୍ଣ୍ଣ ଚନ୍ଦ୍ର ସାହୁ ଲଣ୍ଡନରେ ବାରିଷ୍ଟରୀ ପଢ଼ି ସାରିବା ପରେ ଇଂରାଜୀ ସଭ୍ୟତାର ଅନ୍ଧ ଆକର୍ଷଣରେ ସମସ୍ତ ସ୍ୱଦେଶୀ ଜିନିଷ ପରିତ୍ୟାଗ କରିଛି। ନିଜ ନାମ ପରିବର୍ତ୍ତନ କରି ପି.ସି. ରାଓ କରିଛି। ସ୍ତ୍ରୀ ବାପାମାଆଙ୍କୁ ପରିତ୍ୟାଗ କରି ବିଶାଖାପାଟଣାରେ ମଦ୍ୟପାନ,

ବେଶ୍ୟା ସହବାସ ପରି ନାନା କୁକର୍ମରେ ଲିପ୍ତ ରହିଛି। ପୁତ୍ରର ପାଠପଢ଼ା ଖର୍ଚ୍ଚ ପାଇଁ ସର୍ବସ୍ୱ ହରେଇଥିବା ପିତାମାତା ଆନ୍ଧ୍ରକୁ ମାଟିକାମ କରିବାକୁ ଯାଇଛନ୍ତି। ଶେଷରେ ପୂର୍ଣ୍ଣଚନ୍ଦ୍ର ନାନା କୁ ଅଭ୍ୟାସ ହେତୁ ଆଦିବ୍ୟାଧି ଗ୍ରସ୍ତ ହୋଇ ହସ୍ପିଟାଲରେ ଚିକିତ୍ସିତ ହୋଇଛି। ତା' ସ୍ତ୍ରୀ ହୀରାମଣି ବହୁ ବିଳମ୍ବରେ ଏ ସମ୍ବାଦ ପାଇ ସ୍ୱାମୀ ପାଖକୁ ଯାଇଛି। ଅକ୍ଳାନ୍ତ ସେବାଯତ୍ନ ଦ୍ୱାରା ସ୍ୱାମୀକୁ ରୋଗ ମୁକ୍ତ କରାଇ ପାରିଛି। ପୂର୍ଣ୍ଣ ଚନ୍ଦ୍ର ନିଜ ଭୂଲ୍ ବୁଝିପାରି ଅନୁତପ୍ତ ହୋଇଛି ଓ ପୁନର୍ବାର ସେମାନଙ୍କ ହସଖୁସିର ସଂସାର ଫେରିଆସିଛି।

ଗୁଣବତୀ ପତ୍ନୀ ହୀରାମଣିର ସେବା, ଯତ୍ନ, ସହନଶୀଳତା, ଧୈର୍ଯ୍ୟ ଓ କ୍ଷମାଶୀଳତା ହେତୁ ଗୋଟିଏ ପରିବାର ଧ୍ୱଂସ ମୁଖରୁ ରକ୍ଷା ହୋଇପାରିଛି। ତତ୍‌କାଳୀନ ସାମାଜିକ ପୃଷ୍ଠପୀଠିକାରେ ଆମ ସମାଜ ଓ ଜୀବନ କିପରି ଆକ୍ରାନ୍ତ ହେଉଥିଲା ତାହା ଏ ଗଳ୍ପରେ ସୁନ୍ଦର ଭାବରେ ପ୍ରତିଫଳିତ।

**ସୁଲକ୍ଷଣା :** ସୁଲକ୍ଷଣା ଗଳ୍ପ ନାରୀର ମହନୀୟତା ପ୍ରଖ୍ୟାପନ କରୁଥିବା ଆଉ ଏକ ସାର୍ଥକ ସୃଷ୍ଟି। ଗଳ୍ପଟି ତତ୍କାଳୀନ ସାମାଜିକ ପୃଷ୍ଠପୀଠିକାରେ ନବ୍ୟ ଶିକ୍ଷିତ, ଭ୍ରଷ୍ଟ ଯୁବକମାନଙ୍କର ଚିତ୍ର ବହନ କରିଛି। ଏହା ଫକୀର ମୋହନ ସେନାପତିଙ୍କ ପେଟେଣ୍ଟ ମେଡିସିନ୍ ଗଳ୍ପରେ ପ୍ରଭାବିତ ହେବା ପରି ଅନୁଭୂତ ହୁଏ। ଆସିକାର ଓକିଲ କିଶୋର ଚନ୍ଦ୍ର ପ୍ରଧାନ। ଘରେ ସୁଲକ୍ଷଣା ପରି ଗୁଣବତୀ, ରୂପବତୀ ଥାଉ ଥାଉ ବାହାରେ ବେଶ୍ୟାସକ୍ତ ଓ ମଦ୍ୟପାନରେ ଅଭ୍ୟସ୍ତ। ସ୍ତ୍ରୀ ସୁଲକ୍ଷଣା ଏହାର ପ୍ରତିବାଦ କଲେ ଶାରୀରିକ ନିର୍ଯାତନା ସହିବାକୁ ପଡ଼େ। ଥରେ ସୋଡ଼ା ବୋତଲରେ କିଶୋରଚନ୍ଦ୍ର ପତ୍ନୀ ସୁଲକ୍ଷଣାକୁ ଆଘାତ କରି ଘରୁ ବାହାରି ଯାଏ। ବହୁ କଷ୍ଟରେ ପତ୍ନୀ ସୁଲକ୍ଷଣା ଭାଇଭାଉଜଙ୍କ ସହାୟତାରେ ବ୍ରହ୍ମପୁର ହସ୍ପିଟାଲରେ ଚିକିତ୍ସିତ ହୁଏ କିନ୍ତୁ ସ୍ୱାମୀ ପାଇଁ ଏ ଦୁର୍ଦ୍ଦଶା ହୋଇଛି ବୋଲି ପ୍ରକାଶ କରେନାହିଁ। ଦୀର୍ଘ ଛଅ ମାସ ଚିକିତ୍ସିତ ହେବା ପରେ ଦିନେ ହଠାତ୍ ସୁଲକ୍ଷଣା ଚିଠିଟିଏ ଲେଖି ପଳାୟନ କରେ। ଅନ୍ଧାର ରାତିରେ ତା' ପାଖରୁ ଜଣେ ଅଳଙ୍କାର ଛଡ଼ାଇ ନେବାକୁ ଚେଷ୍ଟା କରେ। ବ୍ୟକ୍ତିଟି କିଶୋରଚନ୍ଦ୍ର ବୋଲି ସୁଲକ୍ଷଣା ଚିହ୍ନିପାରେ। ଦୈବୀଯୋଗରୁ ସେହି ସମୟରେ କିଶୋରକୁ ସର୍ପଟିଏ ଦଂଶନ କରେ। ସେ ଯନ୍ତ୍ରଣାରେ ଅତିଷ୍ଠ ହୁଏ। ସୁଲକ୍ଷଣାର ଭାଇ ଭାଉଜ ସୁଲକ୍ଷଣାକୁ ଖୋଜି ଖୋଜି ଠିକ୍ ସେତିକି ବେଳକୁ ସେଠାରେ ଉପସ୍ଥିତ ହୋଇଯାଆନ୍ତି। କିଶୋର ଚନ୍ଦ୍ରକୁ ହସ୍ପିଟାଲ ନିଅନ୍ତି, ସେଠାରେ ସେ ଭଲ ହୁଏ। କୃତକର୍ମ ପାଇଁ ଅନୁତପ୍ତ ହୋଇ ପୁନଶ୍ଚ ସୁଖରେ ଘର ସଂସାର କରେ।

ଗଳ୍ପଟି ନାରୀ ଚରିତ୍ରର ବିଶେଷତ୍ୱ ବହନ କରିବା ସଂଗେ ସଂଗେ ପ୍ରାକ୍ ସ୍ୱାଧୀନତା କାଳର ଅବକ୍ଷୟଶୀଳ ସାମାଜିକ ଜୀବନର ମାର୍ମିକ ଚିତ୍ର ବହନ କରିଛି।

**ଲଳିତା :** ନାରୀ ନିର୍ଯାତନାର ଚରମତମ ଦୃଷ୍ଟାନ୍ତ ବହନ କରିଥିବା ଗଳ୍ପ "ଲଳିତା"। ଏହି ଗଳ୍ପର ନାୟକ ମହାଜନ ରାମାରାଓର ପୁତ୍ର ରାଙ୍ଗାରାଓ। ବାଲ୍ୟକାଳରୁ ପିତୃମାତୃହୀନ ହୋଇ କୁସଙ୍ଗରେ ପଡ଼ି କୁଅଭ୍ୟାସର ବଶବର୍ତ୍ତୀ ହୋଇଛି। ମାଧବରାଓର

କନ୍ୟା ଲଳିତା ସହ ପ୍ରେମ ସମ୍ପର୍କ ସୃଷ୍ଟି କରି ତାକୁ ବିବାହ କରେ। ବିବାହ ପରେ ସୁଦ୍ଧା ସେ କୁସଙ୍ଗ ଓ କୁଅଭ୍ୟାସରୁ ମୁକ୍ତ ହୋଇପାରେ ନାହିଁ। ଏପରିକି ବିବାହର ଗୋଟିଏ ବର୍ଷ ପରେ ଲଳିତା ପ୍ରତି ବୀତସ୍ପୃହ ହୋଇ ବିଜୟନଗରରୁ ବେଶ୍ୟା ରାମାମଣିକୁ ଆଣି ଘରେ ରଖିଛି। ସହନଶୀଳା ଲଳିତା ସ୍ୱାମୀର ଆଦେଶରେ ରାମାମଣିର ସେବା ମଧ୍ୟ କରିଛି। ହତଭାଗିନୀ ଲଳିତା ସ୍ୱାମୀର ସବୁ ଅତ୍ୟାଚାରକୁ ବିନା ପ୍ରତିବାଦରେ ସହ୍ୟ କରି ଆସିଲେ ସୁଦ୍ଧା ସୁଲକ୍ଷଣା ଓ ହୀରାମଣିଙ୍କ ପରି ସେ ଈଶ୍ୱରଙ୍କ ଠାରୁ ନ୍ୟାୟ ପାଇନାହିଁ। କ୍ୟାନ୍‌ସର୍ ରୋଗରେ ଆକ୍ରାନ୍ତ ହୋଇଛି। ସ୍ୱାମୀର ସୋହାଗ କିମ୍ବା ଡାକ୍ତରୀ ଚିକିତ୍ସା ପାଇପାରି ନାହିଁ। ରୋଗ ଯନ୍ତ୍ରଣାରେ ସଢ଼ି ସଢ଼ି ମାତ୍ର ଛଅ ମାସ ମଧ୍ୟରେ ଇହଲୀଳା ସମ୍ବରଣ କରିଛି। ଲଳିତା ଜୀବନର କରୁଣ ପରିସମାପ୍ତି ପାଠକ ମନରେ ଗଭୀର ବ୍ୟଥା ଓ ବେଦନାର ରେଖା ଆଙ୍କି ଦେଇଥାଏ।

**ବାଳିକା ବିବାହ :** ବାଳିକା ବିବାହ ଗଳ୍ପଟି ତତ୍କାଳୀନ ଶାରଦା ଆଇନ୍ ଆଧାର କରି ରଚିତ। ବାଲ୍ୟ ବିବାହ ଆଇନ୍ ପ୍ରଣୟନ ପରେ ସୁଦ୍ଧା ବହୁ ପିତାମାତା ଅର୍ଥ ଲୋଭରେ ନିଜ କନ୍ୟା ସନ୍ତାନମାନଙ୍କୁ ବୃଦ୍ଧମାନଙ୍କ ସହ ବିବାହ କରାଇ ଦିଅନ୍ତି। ବାଳିକା ବିବାହ ଗଳ୍ପଟି ତାହାର ଏକ ନୀରବ ପ୍ରତିବାଦ।

ପାରଳାଖେମୁଣ୍ଡିର ଜଣ ଦଶରଥପୁର ଶାସନ ଗାଁର ବିଶ୍ୱନାଥ ଦାସଙ୍କ ପୁତ୍ର ଲୋକନାଥ। କନ୍ୟା ପାର୍ବତୀ। ବାର ବର୍ଷ ବୟସ। ପିତା ବିଶ୍ୱନାଥ ଅର୍ଥ ଲୋଭରେ ୬୦ ବର୍ଷର ବୃଦ୍ଧ ସହ ତା' ବିବାହ ସ୍ଥିର କରିଛି। କିନ୍ତୁ ତା'ର ପୁତ୍ର ପାରଳାଖେମୁଣ୍ଡି କଲେଜରେ ପଢୁଥିବା ଲୋକନାଥ ଚତୁରତା ସହ ଏ ବିବାହ ବନ୍ଦ କରିବାରେ ସମର୍ଥ ହୋଇଛି ଓ ପାର୍ବତୀକୁ ଉପଯୁକ୍ତ ପାତ୍ର ସହ ବିବାହ କରାଇ ଦେଇଛି।

ଆମ ସମାଜରେ ନାରୀମାନଙ୍କ ଦୟନୀୟ ସ୍ଥିତି ଲେଖକଙ୍କ ମନରେ ଯେଉଁ ଗଭୀର ରେଖାପାତ କରିଛି ତାର ସ୍ୱତଃସ୍ଫୁର୍ତ୍ତ ପରିପ୍ରକାଶ ହେଉଛି ତାଙ୍କର ଏହି ଗଳ୍ପ ସମୁହ। ସମାଜରେ ନାରୀମାନଙ୍କ ପ୍ରତି ପୁରୁଷର ଦୃଷ୍ଟିକୋଣ ଓ ନାରୀର ମହନୀୟତା ପ୍ରତ୍ୟାଖ୍ୟାତ କରି ସେମାନଙ୍କୁ ନ୍ୟାୟ ପ୍ରଦାନ କରିବା ବିକ୍ରମ ବର୍ମାଙ୍କ ଗଳ୍ପଗୁଡ଼ିକର ପ୍ରଛନ୍ନ ଉଦ୍ଦେଶ୍ୟ ମନେହୁଏ।

**ନିଜ ଗାଡ଼େ ନିଜେ ପଡ଼େ :** କର୍ମଫଳରେ ବିଶ୍ୱାସ କରୁଥିବା ବିକ୍ରମ ଦେବ ବର୍ମାଙ୍କ ନିଜ ଗାଡ଼େ ନିଜେ ପଡ଼େ ଗଳ୍ପ ସମାଜରେ ଅପକର୍ମ କରୁଥିବା ମଣିଷମାନଙ୍କ ପାଇଁ ଏକ ଚେତାବନୀ।

ଗଳ୍ପର ବିଷୟବସ୍ତୁ ଏହିପରି। ଜଣେ ବୃଦ୍ଧାଟିଏ ଯାହାର ତିନି ପୁଅ। ଡକାୟତି କରି ବଞ୍ଚନ୍ତି ଦୁଇ ପୁଅ। ଅନ୍ୟ ଜଣେ ଘରେ ଥାଏ। ଜଣେ ସୁନା ବ୍ୟବସାୟୀ ନୀଳକଣ୍ଠ ଓ ତା'ର ପୁଅ ନାରାୟଣ ଡିମିରିପୁଟ ହାଟରୁ ବେପାର ସାରି ଫେରୁଥିବା ସମୟରେ ଏହି

ଦୁଇ ଡକାୟତଙ୍କ ଆକ୍ରମଣରେ ପିତା ନୀଳକଣ୍ଠର ମୃତ୍ୟୁ ହୁଏ ଏବଂ ଭୟରେ ନାରାୟଣ ଆଲୁଅ ଜଳୁଥିବା ଏକ ଗୃହରେ ଆଶ୍ରୟ ନିଏ। ଦୁର୍ଭାଗ୍ୟବଶତଃ ତାହା ଥିଲା ସେହି ଡକାୟତମାନଙ୍କର ଘର। ଏ ପୁଅଟିକୁ ମଧ୍ୟ ସେମାନେ ମାରିବାର ଷଡ଼ଯନ୍ତ୍ର କରୁଥିଲେ। ନାରାୟଣ ତାହା ଜାଣିପାରି ଅର୍ଦ୍ଧରାତ୍ରିରେ ଖସି ଆସି କୋରାପୁଟ ଥାନାରେ ଖବର ଦେଇଛି। ସେପଟରେ ମାଆ ଓ ଦୁଇ ପୁଅ ମିଶି ନାରାୟଣ ବୋଲି ସେମାନଙ୍କ ନିଜ ତୃତୀୟ ପୁଅକୁ ହତ୍ୟା କରିଛନ୍ତି। କୋରାପୁଟରୁ ପୋଲିସ୍ ଯାଇ ମାଆ ଓ ଦୁଇ ପୁଅକୁ ଗିରଫ କରିଛି। ଏ ଗଳ୍ପରେ ଆମ ଭାଗବତ ବାଣୀ ଯେ ପ୍ରାଣୀ ପାଞ୍ଚେ ପରମନ୍ଦ, ତା' ମନ୍ଦ ପାଞ୍ଚନ୍ତି ଗୋବିନ୍ଦ ଉକ୍ତିର ଯଥାର୍ଥତା ପ୍ରତିପାଦିତ ହୋଇଛି।

**ଭୂତ ଭୟ:** ଭୂତ ଭୟ ଗଳ୍ପଟି ମୂଳରେ ଲେଖକଙ୍କର ରକ୍ଷଣଶୀଳ ମନୋବୃତ୍ତି ନିହିତ। ସମାଜରେ ବିଧବା ବିବାହ ପ୍ରଚଳନ ହେବା ଦ୍ୱାରା ଯୁବ ସମାଜ ବିଭ୍ରାନ୍ତ ହେବାର ଆଶଙ୍କା ଅନୁଭବ କରୁଥିଲେ। ବିଧବା ବିବାହ ପାଇଁ ଆଗଭର ହୋଇଥିବା ପିତୃହୀନ ଯୁବକ କାମଦେବ ମନରେ ଭୂତଭୟ ସୃଷ୍ଟି କରି ସେଥିରୁ ବିରତ କରିଛନ୍ତି। ଯୁବକ କାମଦେବ ପିତାଙ୍କର ବନ୍ଧୁ ଜୟକୃଷ୍ଣ ମଶାରୀଟିଏ ଘୋଡ଼େଇ ହୋଇ ନିଜକୁ କାମଦେବର ପିତାଙ୍କ ଭୂତ ବୋଲି କାମଦେବ ମନରେ ଭ୍ରମ ସୃଷ୍ଟି କରିଛନ୍ତି। କାମଦେବ ବିଧବା ବିବାହ କଲେ ତାଙ୍କ ଆତ୍ମା ଅଶାନ୍ତ ହେବ। ତେଣୁ ସତ୍ୟ କରାଇ କାମଦେବକୁ ବିଧବା ବିବାହ ନିଷ୍ପତ୍ତିରୁ ନିବୃତ୍ତ କରିଛନ୍ତି। ପରେ ଗୋଟିଏ ଗୁଣବତୀ କନ୍ୟାକୁ କାମଦେବ ବିବାହ କରିଛି।

**ଭେଦ କେବଳ ପାତ୍ରାଳିରେ ଜଣାନଯାଏ ତାହା କ୍ଷୀରେ:**

ଏହି ଗଳ୍ପଟି ପୁରାଣର ଲକ୍ଷ୍ୟହୀରା ଉପାଖ୍ୟାନର ଭାବଧାରା ଆଧାରିତ ଭଳି ମନେହୁଏ। ଏହି ଗଳ୍ପରେ ଚରିତ୍ରହୀନ ରାଜା ରାଘବରାଜଙ୍କୁ ତାଙ୍କ ପୁରୋହିତ ବିଶ୍ୱେଶ୍ୱର ଶର୍ମାଙ୍କ ବିଦୂଷୀ ପତ୍ନୀ କିପରି ଉଚିତ ଶିକ୍ଷା ଦେଇଥିଲେ ତାହା ଅତି କଳାତ୍ମକ ଭାବରେ ବର୍ଣ୍ଣିତ ହୋଇଛି। ଜଣେ ଚିତ୍ରକରଠାରୁ ପୁରୋହିତଙ୍କ ପତ୍ନୀ ସୁଶୀଳା ଦେବୀଙ୍କ ଛବି ଦେଖି ସେହି ଅପରୂପ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତାଙ୍କୁ ପାଇବାର ଦୁର୍ବାର କାମନା ରାଜାଙ୍କର ହୋଇଛି। ଦୂତିକା ସୁଲୋଚନା ହାତରେ ତାଙ୍କ ପାଖକୁ ସମ୍ବାଦ ପ୍ରେରଣ କରିଛନ୍ତି। ମାତ୍ର ଚତୁରତାର ସହ ସୁଶୀଳାଦେବୀ ତାଙ୍କୁ ରୂପା, କାଚ, କଂସା, ପିତଳ ଓ ପଥରରେ ତିଆରି ପାଞ୍ଚ ପ୍ରକାର ଗିନାରେ ଗୋଟିଏ ପ୍ରକାର କ୍ଷୀର ଦେଇ କାହାର ସ୍ୱାଦ ଅଧିକ ବୋଲି ପ୍ରଶ୍ନ କରିଛନ୍ତି। ରାଜା ନିଜର ଭୂଲ୍ ବୁଝିପାରି ସୁଶୀଳାଦେବୀଙ୍କୁ ମାତୃତୁଲ୍ୟ ଜ୍ଞାନ କରିଛନ୍ତି ଓ ପ୍ରଣାମ କରି ପ୍ରତ୍ୟାଗମନ କରିଛନ୍ତି। ବୁଦ୍ଧିମତୀ ବିଦୂଷୀ ନାରୀଟିଏ ବୁଦ୍ଧିମତ୍ତା ଦ୍ୱାରା ନିଜର ସତୀତ୍ୱ ଅକ୍ଷୁଣ୍ଣ ରଖିବା ସହ ସମାଜକୁ ମଧ୍ୟ ଶୃଙ୍ଖଳିତ ରଖିପାରିଥାଏ। ଏହା ଏ ଗଳ୍ପର ବାର୍ତ୍ତା।

**ରାଜାଶ୍ରୟ ବିଧାନ :** ରାଜାଙ୍କର ପାଖ ଲୋକ ହେବା ପରେ ପାରିଷଦମାନଙ୍କୁ ଅବମାନନା କରିବାର ଫଳ କିପରି ବିଷମୟ ହୁଏ, ତାହା ଏ ଗଳ୍ପରେ ପ୍ରତିପାଦିତ ହୋଇଛି। ଭୈରବ ଶାସ୍ତ୍ରୀ ନାମକ ଜଣେ ଅହଂକାରୀ ପଣ୍ଡିତଙ୍କୁ ପାରିଷଦ ଦେଶାନ୍ତରୀ କରିଛନ୍ତି ଓ ସେ ଜାଇଁ ଥାଉ ଥାଉ ରାଜାଙ୍କ ମୁଖରେ ତାକୁ ବ୍ରହ୍ମରାକ୍ଷସ ବୋଲି ପରିଚୟ କରାଇଛନ୍ତି।

ଆର୍ଯ୍ୟ ବିବାହାତଙ୍କ ଗଳ୍ପରେ କିଶୋର ଚନ୍ଦ୍ର ପାତ୍ରୀ ଓ ବାସୁଦେବ ନନ୍ଦଙ୍କ କଥୋପକଥନ ମଧ୍ୟରେ ଶାରଦା ଆଇନ ସମ୍ପର୍କରେ ପାଠକମାନଙ୍କୁ ସଚେତନ କରିବା ଲେଖକଙ୍କ ଉଦ୍ଦେଶ୍ୟ। ସମାଜରୁ ବାଲ୍ୟ ବିବାହ ପ୍ରଥା ଉଚ୍ଛେଦ କରି ବିଧବା ବିବାହ ପ୍ରଚଳନକୁ ଉତ୍ସାହିତ କରିବା ଏହି ଗଳ୍ପର ମୁଖ୍ୟ ଉଦ୍ଦେଶ୍ୟ। ସଂଳାପ ଧର୍ମୀ ଗଳ୍ପଟି ବିକ୍ରମଦେବଙ୍କ ନାଟ୍ୟମନସ୍କ ପ୍ରତିଭାର ପରିଚୟ ଦିଏ।

**ଭଣ୍ଡଧର୍ମୀ :** ଏହାକୁ ଗଳ୍ପ ବୋଲି କୁହାଯିବ ନାହିଁ। ଅନ୍ତଃପୁରର ଶାସନର ଜଗନ୍ମୋହନ ଷଡ଼ଙ୍ଗୀ ଜଣେ କୃପଣ ଭଣ୍ଡ ବ୍ରାହ୍ମଣ ଚରିତ୍ରଟି କେବଳ ଚିତ୍ରଣ କରିଛନ୍ତି। ଫକୀର ମୋହନଙ୍କ ରାମଚନ୍ଦ୍ର ମଙ୍ଗରାଜଙ୍କ ପରି ଏ ଚରିତ୍ରମାନଙ୍କୁ ପ୍ରତି ସତର୍କ ରହିବା ପାଇଁ ସେ ନିର୍ଦ୍ଦେଶ ଦେଇଛନ୍ତି। ଏମାନେ ସ୍ୱାର୍ଥପର ମୁଖାଧାରୀ ମଣିଷ। ଆଦୌ ବିଶ୍ୱାସଯୋଗ୍ୟ ନୁହଁନ୍ତି।

**ଗୋରୀର ଘରକରଣୀ :** ଅଭାବରୁ ସ୍ୱଭାବ ନଷ୍ଟ ବୋଲି ପ୍ରବଚନଟିଏ ଥିଲେ ସୁଦ୍ଧା ସେହି ଅଭାବର କଷଟି ପଥର ମଧ୍ୟରେ ବ୍ୟକ୍ତି ଚରିତ୍ର ବେଳେବେଳେ ଶୁଦ୍ଧ ସୁବର୍ଣ୍ଣ ହୋଇ ଝଟକି ଉଠେ। ଗୋରୀର ଘରକରଣୀ ଗଳ୍ପ ଏହାର ଗୋଟିଏ ଉତ୍କୃଷ୍ଟ ନିଦର୍ଶନ। ଅଭାବରେ ପଡ଼ି ବାବୁ ଘରୁ ଚାଉଳ ସେରେ ଚୋରି କରିଛି ଗୋରୀ। ଘରରୁ ଆସିବା ପରେ ଆସି ଅନୁତାପ କଲାବେଳକୁ ପୁଅ ଓ ସ୍ୱାମୀର ଭୋକିଲା ପେଟ ତା' ଆଖି ଆଗରେ ନାଚି ଉଠିଛି। ଅଧା ଚାଉଳ ସ୍ୱାମୀ ପୁତ୍ରଙ୍କ ପାଇଁ ରାନ୍ଧି ନିଜେ ଉପାସ ରହିଛି। ଆର ଅଧକ ତା' ପରଦିନ ବାବୁଆଣୀକି ଫେରେଇ ସବୁ ସତ କଥା କହିଛି। ବାବୁ ଓ ବାବୁଆଣୀ ତା'ର ସଚ୍ଚୋଟପଣିଆରେ ମୁଗ୍ଧ ହୋଇଛନ୍ତି। ତା' ଦରମା ବଢ଼ାଇବା ସହ ତା' ସ୍ୱାମୀକୁ ବାବୁଘରେ ଚାକିରି ଦେଇଛନ୍ତି। ସାଧୁତା ଓ ସଚ୍ଚରିତ୍ରତା ମଣିଷ ଭାଗ୍ୟ ବଦଳେଇ ଦେଇଥାଏ। ଗୋରୀର ଘରକରଣୀ ଏହି ବାର୍ତ୍ତା ଦେଇଥାଏ।

**ମାଲୋ ଚରିତ୍ର:** ଏହି ଗଳ୍ପଟି ଏକ ଐତିହାସିକ ଗଳ୍ପ। ଗଳ୍ପଟି ଛତ୍ରପତି ଶିବାଜୀଙ୍କ ଉଦାରତା ଓ ମାଲୋର ସଚ୍ଚୋଟପଣକୁ ଆଧାର କରି ରହିଛି। ଶିବାଜୀଙ୍କ ଶୟନ କକ୍ଷରେ ତାଙ୍କୁ ହତ୍ୟା କରିବାକୁ ପ୍ରହରୀଙ୍କ ଦ୍ୱାରା ଧରାପଡ଼ିଥିବା ମାଲୋ ସତ୍ୟକୁ ସ୍ୱୀକାର କରି କହିଛି ଯେ, ଯଦିଓ ତା' ବାପା ଶିବାଜୀଙ୍କ ପ୍ରାଣ ରକ୍ଷକ ଥିଲା, ତା' ମୃତ୍ୟୁ ପରେ ମାଆ ପୁଅ ଖାଇବାକୁ ପାଉ ନାହାନ୍ତି। ଏବେ ଧନୀ ହେବାର ଆଶାରେ ସେ

ଶିବାଜୀଙ୍କ ଶତ୍ରୁ ସୁଭାଗ୍ୟ ରାଓଙ୍କ ନିର୍ଦ୍ଦେଶରେ ଶିବାଜୀଙ୍କୁ ହତ୍ୟା କରିବାକୁ ଆସିଛି। ଶିବାଜୀ ତାଙ୍କୁ ମୃତ୍ୟୁଦଣ୍ଡ ଦେବାପାଇଁ ଆଦେଶ ଦେଇଛନ୍ତି। କିନ୍ତୁ ମାଲୋ ମରିବା ପୂର୍ବରୁ ମାଆକୁ ଦେଖି ଆସିବାପାଇଁ ଇଚ୍ଛା ବ୍ୟକ୍ତ କରିଥିବାରୁ ଶିବାଜୀ ରାଜି ହୋଇଛନ୍ତି। ମାଆକୁ ଦେଖା କରିସାରି ମାଲୋ ମୃତ୍ୟୁଦଣ୍ଡ ପାଇଁ ଫେରିଆସିଥିବାରୁ ଶିବାଜୀଙ୍କ ହୃଦୟ ତରଳି ଯାଇଛି ଓ ସେ ତାକୁ ନିଜର ରକ୍ଷକ ରୂପେ ନିଯୁକ୍ତି ଦେଇଛନ୍ତି।

**ମୈତ୍ରୀ :** ମୈତ୍ରୀ ଗଳ୍ପଟି ଏକଦା ଘନିଷ୍ଠ ବନ୍ଧୁଥିବା ନାରାୟଣ ଓ ସଦାନନ୍ଦଙ୍କ କାହାଣୀ। କିନ୍ତୁ ନାରାୟଣ ବିଶ୍ୱାସଘାତକତା କରି ସଦାନନ୍ଦ ପାଇଁ ନାନା ବିଧ ସମସ୍ୟା ସୃଷ୍ଟି କରିଛି। କିନ୍ତୁ କୃତକର୍ମର ଫଳସ୍ୱରୂପ ନାରାୟଣ ବାଲେଶ୍ୱର ବଦଳି ହୋଇ ସେଠାରେ ସ୍ତ୍ରୀ ପୁତ୍ର ଧନ ସମ୍ପତ୍ତି ଓ ଚାକିରି ହରେଇ ଶେଷରେ ଫୁଟ୍‌ପାଥ୍‌କୁ ଯାଇଛି। ସେତେବେଳେ ସଦାନନ୍ଦ ହିଁ ତାକୁ ସାହାଯ୍ୟ କରିଛି ଓ ତା'ରି ସହାୟତାରେ ନାରାୟଣ ସଦାନନ୍ଦର ବ୍ୟକ୍ତିଗତ ମ୍ୟାନେଜର ହୋଇ ପରିବାର ପ୍ରତିପୋଷଣ କରିଛି। ବିପଦ ବେଳର ବନ୍ଧୁ ହିଁ ପ୍ରକୃତ ବନ୍ଧୁ, ଏହା ଏ ଗଳ୍ପଟିରେ ଗାଳ୍ପିକ ସାବ୍ୟସ୍ତ ହୋଇଛି।

**ପାପ ପରିଣାମ :** ବିକ୍ରମ ଦେବ ପାପପୂଣ୍ୟ, ନୀତି ଅନୀତି, ନ୍ୟାୟ ଅନ୍ୟାୟରେ ବିଶ୍ୱାସ କରୁଥିଲେ। ସେହି ଚିନ୍ତାଧାରାର ପ୍ରତିଫଳନ ତାଙ୍କର ବହୁ ଗଳ୍ପ କବିତାରେ ହୋଇଛି। ଉକ୍ତ ଗଳ୍ପରେ ମଧ୍ୟ ଜଣେ ସଦ୍‌ଗୁଣ ସମ୍ପନ୍ନ ବ୍ୟକ୍ତି ରାମଚନ୍ଦ୍ରଙ୍କୁ ରାମଶଙ୍କର ନାମକ ଅକୃତଜ୍ଞ ଚରିତ୍ରଟିଏ ବାରମ୍ବାର ପ୍ରତାରିତ କରିଛି। ରାମଚନ୍ଦ୍ରଙ୍କ କନ୍ୟାକୁ ବିବାହ କରିବା ସତ୍ତ୍ୱେ ରାମଶଙ୍କର ତାଙ୍କ ପ୍ରତି ବିଶ୍ୱାସଘାତକତା କରିଚାଲିଛି। ପ୍ରତିଫଳ ସ୍ୱରୂପ ଚୋରଙ୍କ ଦ୍ୱାରା ତା'ର ସର୍ବସ୍ୱ ଲୁଟି ହୋଇଯାଇଛି। ସର୍ବସ୍ୱାନ୍ତ ହେବା ପରେ ପୁଣି ସେହି ରାମଚନ୍ଦ୍ର ହିଁ ତା'ର ଭରଣପୋଷଣ ଦାୟିତ୍ୱ ବହନ କରିଛନ୍ତି। ଭଗବାନଙ୍କ ଦୃଷ୍ଟିରେ ଅକୃତଜ୍ଞ ଲୋକମାନେ ସର୍ବଦା ଦୁର୍ଭୋଗ ହିଁ ଭୋଗଥାନ୍ତି। କ୍ଷମା ହିଁ ମଣିଷପଣିଆର ସର୍ବଶ୍ରେଷ୍ଠ ବିଭୁତି ଏହା ପ୍ରତିପାଦିତ କରିଛନ୍ତି ଗାଳ୍ପିକ ବିକ୍ରମ ଦେବ ବର୍ମା।

## ପ୍ରାବନ୍ଧିକ ବିକ୍ରମ

ବିକ୍ରମଦେବ ନିଜେ ତାଙ୍କ ପ୍ରବନ୍ଧ ସମ୍ପର୍କରେ କୁହନ୍ତି, ଲୋକ ଗ୍ରହଣ କରୁ କିମ୍ବା ନ କରୁ ଯାହା କହିବା ଉଚିତ ବୋଲି ମୁଁ ଭାବେ ତାହା କରିଦିଏ। ସେହି ହେତୁ ତାଙ୍କ ପ୍ରବନ୍ଧର ପରିସର ବ୍ୟାପକ ଓ ବିସ୍ତୃତ। ବିଭିନ୍ନ ବିଷୟବସ୍ତୁ ତାଙ୍କର ଚିନ୍ତାଚେତନା ରାଜ୍ୟକୁ ସ୍ୱତଃ ଅନୁପ୍ରବେଶ କରନ୍ତି। ରାଜନୈତିକ ସମସ୍ୟା, ଆଧ୍ୟାତ୍ମିକ ସଙ୍କଟ, ସାମାଜିକ ବିଶୃଙ୍ଖଳା, ସାହିତ୍ୟରେ ବ୍ୟାକରଣଗତ ଦୋଷତ୍ରୁଟି, ଜ୍ୟୋତିଷ ଶାସ୍ତ୍ର, ଅନ୍ଧବିଶ୍ୱାସ, ରଢ଼ିବାଦୀ ଚିନ୍ତାଧାରା ସହ ସାମାଜିକ ଅପସଂସ୍କୃତି ଉପରେ ମତ ମନ୍ତବ୍ୟ, ପାରିବାରିକ ସମ୍ପର୍କ, ଶିକ୍ଷା, ସଂସ୍କାର, ପୁରାଣ, ପ୍ରକୃତି, ଇତିହାସ, ଦର୍ଶନ ସାହିତ୍ୟ, ଭୂଗୋଳ ଆଦି ବହୁ ବୈଚିତ୍ର୍ୟପୂର୍ଣ୍ଣ ପ୍ରସଙ୍ଗର ସବିଶେଷ ଆଲୋଚନାରେ ତାଙ୍କ ପ୍ରବନ୍ଧ ସାହିତ୍ୟ ଅନ୍ତର୍ଗର୍ଭା।

ସୀମିତ ଶବ୍ଦ ମଧ୍ୟରେ ସେ ବହୁ ଗୁଢ଼ ତତ୍ତ୍ୱ ଓ ତଥ୍ୟ ପ୍ରଦାନ କରିପାରନ୍ତି। ତାଙ୍କ ପ୍ରବନ୍ଧ ରଚନାକୁ ଭୂୟସୀ ପ୍ରଶଂସା କରି ପ୍ରାଧ୍ୟାପକ ଶରତ ମହାନ୍ତି କହନ୍ତି, ତାଙ୍କର ପ୍ରବନ୍ଧଗୁଡ଼ିକ ମଧୁସୂଦନୀୟ, ସୁସ୍ଥ ସଂସ୍କୃତ ଶୈଳୀରେ ଭାବୋଦ୍ଦୀପକ। ପ୍ରବନ୍ଧରେ ସେ ବହୁ ଗୁଢ଼ ତତ୍ତ୍ୱ ଦର୍ଶନ ଶାସ୍ତ୍ର ପ୍ରାଞ୍ଜଳ ଭାବରେ ପ୍ରକାଶ କରିଛନ୍ତି। ପ୍ରବନ୍ଧରେ ଶବ୍ଦ ପ୍ରୟୋଗ, ଭାଷା ଭାବ ବ୍ୟକ୍ତ କ୍ଷେତ୍ରରେ ସେ କଠୋରପନ୍ଥୀ। ଅସମୀଚିନ ଶବ୍ଦ ସୃଷ୍ଟି ଦ୍ୱାରା ସରସ୍ୱତୀଙ୍କର ଶରୀର ବୃଦ୍ଧିକରଣରେ ସରସ୍ୱତୀଙ୍କୁ ଗୋଦରୀ କରିବା ଅସାମଞ୍ଜସ୍ୟ। (ଶରତ କୁମାର ମହାନ୍ତି, ଗୁପ୍ତେଶ୍ୱର, ସ୍ମରଣିକା, ପୃ-୩୧) ବିକ୍ରମଦେବଙ୍କ ପ୍ରବନ୍ଧ ପାଇଁ। ଏହାଠାରୁ ବଳି ଆଉ କିଛି ମନ୍ତବ୍ୟ ଦିଆଯାଇ ନପାରେ।

ଚାର୍ବାକ ଦର୍ଶନ ଓ ସଂଖ୍ୟା ଦର୍ଶନ ଦୁଇଟି ପ୍ରବନ୍ଧରେ ବିକ୍ରମ ବର୍ମା ଭାରତୀୟ ଦର୍ଶନ ତତ୍ତ୍ୱକୁ ଖୁବ୍ କମ୍ ଶବ୍ଦ ମଧ୍ୟରେ ଯେଉଁପରି ଭାବରେ ବ୍ୟାଖ୍ୟା କରିଛନ୍ତି, ତାହା ଜଣେ ଉଚ୍ଚକୋଟୀର ପ୍ରାବନ୍ଧିକଙ୍କ ଦ୍ୱାରା ହିଁ ସମ୍ଭବ। ପୁନର୍ଜନ୍ମରେ ବିଶ୍ୱାସ ରଖୁ ନଥିବା ଚାର୍ବାକଙ୍କ ମତକୁ ବ୍ୟାଖ୍ୟା କରିବାକୁ ଯାଇ ପ୍ରାବନ୍ଧିକ କହନ୍ତି- ପୃଥିବୀ ଜଳ, ତେଜ, ବାୟୁ ବୋଲି ଭୂତ୍ ଚତୁଷ୍ଟୟର ମାତ୍ର। ଏ ଚାରି ଭୂତରୁ ଶରୀର ସୃଷ୍ଟି ହୋଇ ମଦ୍ୟରୁ ମାଦକ ଉତ୍ପନ୍ନ ହେବା ପରି ଚୈତନ୍ୟ ଜନ୍ମଇ, ତାକୁ ଆତ୍ମା ବୋଲି କୁହାଯାଏ। ଶରୀର ନାଶରେ ତାହା ନାଶ ହୁଏ। ଏହାଛଡ଼ା ଆଉ ଗୋଟିଏ ଉଦାହରଣ ଦେଇ ସେ କହନ୍ତି, ବ୍ରାହ୍ମଣଙ୍କୁ ମେଢ଼ ତଳେ ଭାତ ଖୁଆଇଲେ ମେଢ଼ ଉପରିସ୍ଥ ବ୍ୟକ୍ତି ପେଟ ପୁରୁ ନଥିବାରୁ ଶ୍ରାଦ୍ଧ ଦତ୍ତ ଅନ୍ନରେ ମୃତବ୍ୟକ୍ତିର ତୃପ୍ତି ଭ୍ରମାତ୍ମକ। ସେହିପରି ସାଂଖ୍ୟ ଦର୍ଶନ ସମ୍ପର୍କରେ କହନ୍ତି ଏହି ଦର୍ଶନ ଦୁଃଖବାଦରୁ ଆରମ୍ଭ। ଏହି ଦୁଃଖ ତ୍ରିବିଧ- ଆଧାତ୍ମିକ ଅଧିଭୌତିକ ଏବଂ ଆଧିବୈଦିକ। ଏଥିରୁ ନିବୃତ୍ତ ହେବାର ଏକମାତ୍ର ଉପାୟ ଜ୍ଞାନ। ସାଂଖ୍ୟମାନେ ଈଶ୍ୱରଙ୍କୁ ମାନ୍ତି ନାହିଁ। ଦୁଧ ନିଜେ ଦହି ହେବା ପରି ପୃଥିବୀରେ ସବୁକିଛି ଆପେ ଆପେ ହୋଇଯାଏ। ସେ ସବୁର ବ୍ୟାଖ୍ୟା ପ୍ରାବନ୍ଧିକ କରିଛନ୍ତି। ସଂଖ୍ୟାରେ ସୀମିତ ହେଲେ ସୁଦ୍ଧା ପ୍ରାବନ୍ଧିକଙ୍କ ବିଚାର ଓ ସୂକ୍ଷ୍ମଚିନ୍ତନ ଏହି ପ୍ରବନ୍ଧରେ ପ୍ରତିଫଳିତ ହୋଇଛି।

କେବଳ ଦର୍ଶନ ସାହିତ୍ୟ ନୁହେଁ, ଆମ ନିତ୍ୟ ନୈମିତ୍ତିକ ଜୀବନର ବହୁବିଧ ପ୍ରସଙ୍ଗ ଉପରେ ସେ ତାଙ୍କର ବହୁ ତତ୍ତ୍ୱଭିତ୍ତିକ ଆଲୋଚନା ରହିଛି। ମନ୍ଦିରମାନଙ୍କରେ ଅଶ୍ଳୀଳ ବିଗ୍ରହ ବିଷୟରେ ସେ ତାଙ୍କର ନିଜସ୍ୱ ମତ ଦେଇଛନ୍ତି। ବଳି ପ୍ରବନ୍ଧରେ ବଳି ଶବ୍ଦର ବ୍ୟାଖ୍ୟା ସହ ବଳି ସମ୍ପର୍କରେ ସମାଜରେ ପ୍ରଚଳିତ ବହୁ ଅନ୍ଧବିଶ୍ୱାସ ଉପରେ ସେ ତାଙ୍କର ମତ ପ୍ରଦାନ କରିଛନ୍ତି। ନିର୍ମାଲ୍ୟ ଓ ଗୁଣ୍ଡିଚା ଶବ୍ଦ ଉପରେ ବ୍ୟାଖ୍ୟା କରି ସେ ନିଜସ୍ୱ ମତ ପ୍ରଦାନ କରିଛନ୍ତି। ହେରାପଞ୍ଚମୀ ଗାନ୍ଧାରୀ ଏକାଦଶୀ ଫାଲ୍ଗୁନ ଶୁକ୍ଳ ଚତୁର୍ଦ୍ଦଶୀ ଭଳି ପର୍ବପର୍ବାଣୀଗୁଡ଼ିକର ତାତ୍ପର୍ଯ୍ୟ ସେ ନିଜେ ଯେଉଁ ଭଳି ଅନୁଭବ କରନ୍ତି ତାହା ନିର୍ଭୀକ ଭାବରେ ବ୍ୟାଖ୍ୟା କରିଛନ୍ତି।

"ଚିକିତ୍ସା" ପ୍ରବନ୍ଧରେ ବିଭିନ୍ନ ପଦ୍ଧତିର ଚିକିତ୍ସା ସମ୍ପର୍କରେ ସେ କହନ୍ତି, ଭାରତୀୟମାନଙ୍କର ଚିକିତ୍ସା ପଦ୍ଧତି ଆୟୁର୍ବେଦ, ଯବନମାନଙ୍କର ଚିକିତ୍ସା ପଦ୍ଧତି, ୟୁନାନୀ ଓ ଇଂରାଜୀମାନଙ୍କ ଚିକିତ୍ସା ପଦ୍ଧତି ଡାକ୍ତରୀ ଚିକିତ୍ସା। ସେ କହନ୍ତି- ଯେ କୌଣସି ପଦ୍ଧତି ହେଉ ସମଗ୍ରରେ ଜାଣିଥିବା ବୈଦ୍ୟ ଚିକିତ୍ସା କଲେ ରୋଗ ନିବାରିତ ହୁଏ। ଶାସ୍ତ୍ରଜ୍ଞାନହୀନ ବୈଦ୍ୟ ଚିକିତ୍ସା କଲେ ଥିବା ରୋଗ ଯିବା କଥା ତେଣେ ଥାଉଁ ନୂଆ ରୋଗମାନଙ୍କର ଉତ୍ପତ୍ତି ହୁଏ। ଅତଏବ ଜାଣିବା ବୈଦ୍ୟମାନଙ୍କ ଦ୍ୱାରା ଚିକିତ୍ସିତ ହେବା ବିଧେୟ। (ବିକ୍ରମଦେବ ବର୍ମା ରଚନାବଳୀ, ପୃ-୧୨୯, ଦ୍ୱିତୀୟ ଭାଗ)

"ଇତିହାସ ଲେଖକ" ପ୍ରବନ୍ଧରେ ଇତିହାସ ଲେଖନର ପଦ୍ଧତି ଓ ଶୃଙ୍ଖଳା ସମ୍ପର୍କରେ କହିଛନ୍ତି । ଚନ୍ଦ୍ରଗ୍ରହଣକୁ ନେଇ ଆମ ଲୋକମାନଙ୍କର ଅନ୍ଧବିଶ୍ୱାସକୁ ସମାଲୋଚନା କରି ତା'ର ବୈଜ୍ଞାନିକ କାରଣ ଦର୍ଶାଇ ସେ "ଗ୍ରହଣ" ପ୍ରବନ୍ଧରେ ଲେଖିଛନ୍ତି। କାବ୍ୟ ଅନୁବାଦ ବେଳେ କି ପ୍ରକାର ବିଷୟ ଅବଲମ୍ବନ କରିବାକୁ ହୁଏ ସେ ସମ୍ପର୍କରେ ସେ ବେଶ୍ ସଚେତନ ଥିଲେ। ସେହି ହେତୁ ଦ୍ୱିଜେନ୍ଦ୍ର ଲାଲ୍ ରାୟଙ୍କ ଅହଲ୍ୟାର ତେଲୁଗୁ ଅନୁବାଦ ଦେଖି ସେ ମର୍ମାହତ ହୋଇ କହିଛନ୍ତି- କବି କଲିକତାର ଜନୈକା ଫୁଂଶ୍ଚଳିକି ନାୟିକା ଏବଂ ଜନୈକା ଗୁଣ୍ଡାକୁ ନାୟକ କରି ନିଜ କାବ୍ୟ ରଚିଥିଲେ ସାମଞ୍ଜସ୍ୟ ହୋଇଥାନ୍ତା ପରା। କିନ୍ତୁ ପୁରାଣ ଋଷି ପତ୍ନୀଟି ନାୟିକା ଏବଂ ଦେବରାଜଙ୍କୁ ନାୟକ କରି ସେପରି ଦୁଷ୍ଟ କାବ୍ୟ ରଚନା ନିତାନ୍ତ ନିନ୍ଦନୀୟ ଅଟେ। (ରଚନାଳି, ୨ୟ ଭାଗ, ପୃ-୧୦୦)

"ବାନର ଜାତି" ପ୍ରବନ୍ଧରେ ସେ ବାନର ଓ ଋକ୍ଷମାନେ ମାଙ୍କଡ଼ ଓ ଭାଲୁ ନୁହଁନ୍ତି ବରଂ ସେମାନଙ୍କୁ ଏକ ଅନ୍ତର୍ଜାତି କୁହାଯାଇ ପାରେ ବୋଲି ମତ ଦିଅନ୍ତି। ଏମାନେ ହୀନ ବୁଦ୍ଧି ହୋଇଥିବାରୁ ଆର୍ଯ୍ୟ ଓ ଅନାର୍ଯ୍ୟମାନେ ଏମାନଙ୍କୁ ହେୟଜ୍ଞାନ କରୁଥିଲେ। ସେମାନଙ୍କ ମଧ୍ୟରେ ବାଳି ମହାବୀର, ହନୁମାନ ମହାପଣ୍ଡିତ, ସୁଷେଣ ବୈଦ୍ୟ, ଜାମ୍ବବାନ ଅତି ଧୀମନ୍ତ, ନଳ କାରୁକର୍ମ ଦକ୍ଷ, ନୀଳସେନାନୀ ପ୍ରବୀର ଥିଲେ। (ପୃ-୧୩୩, ୨ୟ ଖଣ୍ଡ, ରଚନାଳି)। ସେମାନେ ମର୍କଟ, ଭଲ୍ଲୁକ ହୋଇଥିଲେ ତାଙ୍କ ସ୍ୱାମୀମାନେ ଇନ୍ଦ୍ର ସୂର୍ଯ୍ୟାଗ୍ନି ବାୟୁଙ୍କୁ ମୋହିତ କରିପାରିଥାନ୍ତେ କି? ତାଙ୍କ କନ୍ୟା ଜାମ୍ବବତୀକୁ ଶ୍ରୀକୃଷ୍ଣ ଭଗବାନ ବିବାହ କରିପାରି ଥାନ୍ତେ କି? (ତତୈବ, ପୃ-୧୩୩)

ତାଙ୍କର ମୌଳିକ ଚିନ୍ତାଧାରା, ଯେକୌଣସି ପ୍ରସଙ୍ଗ ଉପରେ ତାଙ୍କର ସ୍ପଷ୍ଟ ଓ ନିର୍ଭୀକ ମତ ପ୍ରବନ୍ଧଗୁଡ଼ିକୁ ବେଶ୍ ଦୃଢ଼ ଓ ଭାବଗର୍ଭକ କରିଛି। ପ୍ରବନ୍ଧଗୁଡ଼ିକର ଭାଷା ପ୍ରାୟତଃ ସଂସ୍କୃତାନୁସାରି ହୋଇଛି। ସ୍ଥାନେ ସ୍ଥାନେ ଗ୍ରାମ୍ୟ ଶବ୍ଦର ପ୍ରୟୋଗ ପ୍ରବନ୍ଧକୁ ଦୋଷଦୁଷ୍ଟ କରିବା ପରିବର୍ତ୍ତେ ସୁଖପାଠ୍ୟ କରିଛି। ଇଚ୍ଛାକୃତ ଭାବରେ ବହୁ ସ୍ଥାନରେ ଦୁଇଟି ଶବ୍ଦକୁ ସନ୍ଧି କରିବା ତାଙ୍କର ଅନ୍ୟତମ ବୈଶିଷ୍ଟ୍ୟ।

ଏସବୁ ବ୍ୟତୀତ ସେ ଅନେକଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ପ୍ରବନ୍ଧ ଲେଖିଛନ୍ତି, ଯେଉଁଠି ସାହିତ୍ୟର ବିଭିନ୍ନ ତତ୍ତ୍ୱ ସମ୍ପର୍କରେ ଆଲୋଚନା ରହିଛି। ଛନ୍ଦ, ଅଳଙ୍କାର, ଔଚିତ୍ୟବାଦ, ନବରସ, ରୂପକ, ସାର ଆଦି ସମ୍ପର୍କରେ ସ୍ୱକୀୟ ମତାମତ ରହିଛି। ଆଧୁନିକ କବିତ୍ୱ ଆଧୁନିକ ଗପ, ନାଟ୍ୟକଳା ଆଦି ବିଷୟ ତାଙ୍କର ଅନୁଭୂତି ପ୍ରସୂତ ଜ୍ଞାନ ପ୍ରବନ୍ଧ ମାଧ୍ୟମରେ ଉତ୍କଳୀୟ ପାଠକମାନଙ୍କୁ ଉପହାର ଦେଇଛନ୍ତି।

ସଂସ୍କୃତ ସାହିତ୍ୟରେ ତାଙ୍କର ଅଗାଧ ଜ୍ଞାନ ତାଙ୍କର ପ୍ରତିଟି ସୃଷ୍ଟିକୁ ସାତ୍ତ୍ୱିକର କରିଛି। ତତ୍ତ୍ୱଗର୍ଭକ ଓ ଭାବଗମ୍ଭୀର କରିଛି।

ରାଜକବି ରାଜର୍ଷି ବିକ୍ରମ ଦେବଙ୍କ ବହୁମୁଖୀ ପ୍ରତିଭା ଉପାନ୍ତ ଅଞ୍ଚଳରେ ଓଡ଼ିଆ ଭାଷା ସାହିତ୍ୟ ସୁରକ୍ଷା ପାଇଁ ପ୍ରହରୀ ସଦୃଶ ଥିଲା। ଯେଉଁ କାଳରେ ଓଡ଼ିଶାର ମଧ୍ୟବର୍ତ୍ତୀ ଅଞ୍ଚଳ ଓଡ଼ିଶାର ହୃତ୍‌ପିଣ୍ଡ ବୋଲି କୁହାଯାଉଥିବା କଟକ ପରି ବାଲେଶ୍ୱର ସୁଦ୍ଧା ପ୍ରାଦେଶିକ ଭାଷା ସାହିତ୍ୟ କବଳରେ ଓଡ଼ିଆ ଭାଷା କବଳିତ ହେଉଥିଲା। ଓଡ଼ିଆ ଭାଷା ସ୍ୱତନ୍ତ୍ର ଭାଷା ନୁହେଁ ବୋଲି ଯୁକ୍ତି ଦର୍ଶାଇ ପ୍ରାଦେଶିକମାନେ ଓଡ଼ିଆ ଭାଷାକୁ ବିଲୋପ କରିବାର ଚକ୍ରାନ୍ତରେ ଥିଲେ, ଓଡ଼ିଆ ଭାଷା ସୁରକ୍ଷାର ପ୍ରକୃଷ୍ଟ ସେନାପତି ଫକୀର ମୋହନ ସେନାପତି ଗଡ଼ ରକ୍ଷକର ଭୂମିକା ଗ୍ରହଣ କରି ଓଡ଼ିଆର ସ୍ୱାଭିମାନ ଅକ୍ଷୁର୍ଣ୍ଣ ରଖିଥିଲେ। ଠିକ୍ ତା'ର ପରବର୍ତ୍ତୀ କାଳର ଦାୟିତ୍ୱ ସ୍ୱତଃ ବହନ କରିଥିଲେ ବିକ୍ରମ ଦେବ ବର୍ମା। ସେତେବେଳେ ଉପାନ୍ତ ଅଞ୍ଚଳରେ ତେଲୁଗୁ ଭାଷାର ସୁଦୂର ବିସ୍ତାରୀ ପ୍ରଭାବ ଥିଲା। ନିଜେ ବିକ୍ରମଦେବ ବର୍ମା ମଧ୍ୟ ବିଶାଖାପାଟଣାରେ ଦୀର୍ଘ କାଳ ରହଣି ହେତୁ ତେଲୁଗୁ ଭାଷାରେ ବ୍ୟୁତ୍ପତ୍ତି ହାସଲ କରିଥିଲେ। ସେ ଚାହିଁଥିଲେ ତେଲୁଗୁ ଭାଷାରେ ଆହୁରି ସାହିତ୍ୟ ସୃଷ୍ଟି କରି ତେଲୁଗୁ ସାହିତ୍ୟର ଇତିହାସରେ ମାଇଲ୍ ଖୁଣ୍ଟିଟିଏ ହୋଇପାରିଥାନ୍ତେ। କିନ୍ତୁ ମାତୃଭାଷା ପ୍ରୀତି, ଜନ୍ମମାଟିର ଆକର୍ଷଣ ନିଜ ଜାତି ଓ ମାଟି ପ୍ରତି କର୍ତ୍ତବ୍ୟ ତାଙ୍କୁ ସେଥିରୁ ବିରତ କରିଥିଲା। ସେ ଅବିଶିଷ୍ଟ ସମୟ ଓ ପ୍ରତିଭା ଉତ୍କଳ ଜନନୀର ସ୍ୱାର୍ଥ ସୁରକ୍ଷା ପାଇଁ ଉତ୍ସର୍ଗ କରିଦେଇଥିଲେ। ଓଡ଼ିଆ ଭାଷାରେ ବିଭିନ୍ନ ବିଭାଗରେ ଲେଖନୀ ଚାଳନା, ରାଜସଭାରେ ଓଡ଼ିଆ ଭାଷା ସାହିତ୍ୟର ଚର୍ଚ୍ଚା ଆଲୋଚନା, ଅପ୍ରକାଶିତ ପାଣ୍ଡୁଲିପି ପ୍ରକାଶ କରିବା ପାଇଁ ପ୍ରୋତ୍ସାହନ ପ୍ରଦାନ କରି ଓଡ଼ିଆ ଭାଷା ସାହିତ୍ୟକ ଉପାନ୍ତ ଅଞ୍ଚଳରେ ସକ୍ରିୟ ରଖିଥିଲେ। ଫଳରେ ଆମ ଭାଷା ଉପରେ ପ୍ରତିବେଶୀ ଭାଷା ଓ ସାହିତ୍ୟର ପ୍ରଭାବ ନିଷ୍କ୍ରିୟ ହୋଇ ପଡ଼ିଥିଲା। ଆମ ଭାଷା ସାହିତ୍ୟର ବିକାଶ ଓ ବିସ୍ତୃତି ବ୍ୟାପକ ହୋଇଥିଲା। ତେଣୁ ଯଥାର୍ଥରେ ଶ୍ରୀ ବିକ୍ରମ ଦେବ ବର୍ମା ଉପାନ୍ତ ଅଞ୍ଚଳର ଭାଷା ସାହିତ୍ୟ ସୁରକ୍ଷା ପାଇଁ ଜାଗ୍ରତ ପ୍ରହରୀ ଥିଲେ। ଉପାନ୍ତ ଓଡ଼ିଆଙ୍କର ଅସ୍ମିତା ସୁରକ୍ଷା ପାଇଁ ବଳିଷ୍ଠ ଭୂମିକା ଗ୍ରହଣ କରିଥିଲେ। ଏଥିପାଇଁ ତାଙ୍କର ସାରସ୍ୱତ ପ୍ରତିଭା ତାଙ୍କ ପାଇଁ ଅନୁକୂଳ ପରିବେଶ ସୃଷ୍ଟି କରିଥିଲା। ସେ ତାହାର ଯଥାର୍ଥ ବିନିଯୋଗ କରିଥିଲେ। ଓଡ଼ିଆ ଭାଷାକୁ ଋଦ୍ଧିମନ୍ତ କରି ସେ ଯଥାର୍ଥ ଭୂମିପୁତ୍ରର ଭୂମିକା ନିର୍ବାହ କରିଥିଲେ।

# ପଞ୍ଚମ ଅଧ୍ୟାୟ
# ଓଡ଼ିଆ ଭାଷା ସାହିତ୍ୟ ସୁରକ୍ଷାରେ ବିକ୍ରମଙ୍କ ଅବଦାନ

## ଉପ ସଂହାର

ଓଡ଼ିଆ ସାରସ୍ୱତ ଭଣ୍ଡାର ବହୁ ଯଶସ୍ୱୀ ରାଜା ମହାରାଜାଙ୍କର ପାଣ୍ଡିତ୍ୟ ଓ ପ୍ରତିଭାରେ ମହିମାବନ୍ତ ହୋଇଛି। କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଏହି ମହାନ୍ ପରାମ୍ପରାର ପଥିକୃତ ଶିଳ୍ପୀ ଥିଲେ। ସେହିପରି ରାଜକୀୟ ପ୍ରୋତ୍ସାହନ ମଧ୍ୟ ଓଡ଼ିଆ ସାହିତ୍ୟର ବହୁ ପ୍ରତିଭାଧରମାନଙ୍କୁ ଯଥାର୍ଥ ମର୍ଯ୍ୟାଦା ପ୍ରଦାନ କରିଛି । ସେମାନଙ୍କ ଲୁକ୍କାୟିତ ଓ ଅପସୃୟମାଣ ପ୍ରତିଭାକୁ ଲୋକଲୋଚନକୁ ଆଣିଛି। ସେମାନଙ୍କ ସୃଷ୍ଟି ସମ୍ଭାରକୁ ଋଦ୍ଧିମନ୍ତ କରିଛି। ଓଡ଼ିଆ ସାହିତ୍ୟ ଇତିହାସ ରାଜା ମହାରାଜାଙ୍କ ଏହି ବଦାନ୍ୟତାକୁ ସ୍ୱର୍ଣ୍ଣାକ୍ଷରେ ଲିପିବଦ୍ଧ କରି ରଖିଛି। ରାଜା ବିକ୍ରମ ଦେବ ବର୍ମା ଓଡ଼ିଆ ସାହିତ୍ୟକୁ ଏହି ଦ୍ୱିବିଧ ପ୍ରକାରେ ସମୃଦ୍ଧ କରିଛନ୍ତି। ତାଙ୍କର ଅସାଧାରଣ ସାରସ୍ୱତ ପ୍ରତିଭାରେ ଯେପରି ଆମ ସାରସ୍ୱତ ଭଣ୍ଡାର ଋଦ୍ଧିମନ୍ତ ହୋଇଛି। ବହୁ ସାହିତ୍ୟିକ ଓ ସାହିତ୍ୟ ଅନୁଷ୍ଠାନ ତାଙ୍କର ଅକୁଣ୍ଠ ସାହାଯ୍ୟ ସହଯୋଗ ସହାନୁଭୂତି ଓଡ଼ିଆ ସାହିତ୍ୟ ପାଇ ସମୃଦ୍ଧ ହୋଇଛି। ଏ କ୍ଷେତ୍ରରେ ବିକ୍ରମଦେବ ପ୍ରକୃତ ରାଜ କବିର ଭୂମିକା ନିର୍ବାହ କରିଛନ୍ତି। ରାଜକାର୍ଯ୍ୟର ବହୁ ବ୍ୟସ୍ତତା ସତ୍ତ୍ୱେ ତାଙ୍କର ରାଜସଭା ସଦାସର୍ବଦା କାବ୍ୟ ସାହିତ୍ୟ ଆଲୋଚନାରେ ମୁଖର ଥିଲା। ବିଦ୍ୱାନମାନଙ୍କ ପାଇଁ ତାଙ୍କର ରାଜସଭା ନନ୍ଦନକାନନ ସଦୃଶ ଥିଲା। ତାଙ୍କର ସାହିତ୍ୟ ପ୍ରତି ଅତିଶୟ ଅନୁରାଗ, ବହୁଶାସ୍ତ୍ର ଦର୍ଶିତା, ତର୍କନିଷ୍ଠତା, ସାହିତ୍ୟର ବିଭିନ୍ନ ବିଭାଗରେ ଅସାଧାରଣ ପାଣ୍ଡିତ୍ୟ ଓ ନିରାଡମ୍ବର ଜୀବନଶୈଳୀ ପ୍ରତି ଗଭୀର ପ୍ରଭାବିତ ହୋଇ ଚିନ୍ତାମଣି ଲେଖିଥିଲେ, ବିଧାତା ତାଙ୍କୁ ରାଜର୍ଷି ବାଞ୍ଛିତ ସକଳ କଳାରେ ଅଳଙ୍କୃତ କରିଛନ୍ତି। ସେ ସର୍ବଗୁଣଧାରୀ ଆଦର୍ଶ ପୁରୁଷ। ମୂର୍ତ୍ତିମାନ ଦେବତା। ଏକାଧାରରେ ସେ ସାହିତ୍ୟପ୍ରେମୀ, କାବ୍ୟାମୋଦୀ, ପଣ୍ଡିତ ନାଟ୍ୟକାର, କଥାକାର, ପ୍ରାବନ୍ଧିକ, ସମାଜ ସଂସ୍କାରକ, ଜନସେବକ, ବୈଦାନ୍ତିକ, ବୈୟାକରଣ, ଜ୍ୟୋତିର୍ବିଦ୍, ଦୟା, ଦାକ୍ଷିଣ୍ୟ ପାଣ୍ଡିତ୍ୟ ପରୋପକାରୀ ପ୍ରଭୃତି ଗୁଣପୁଞ୍ଜ ତାଙ୍କ ଚରିତ୍ରର ଅଳଙ୍କାର ସ୍ୱରୂପ।

କେବଳ ଓଡ଼ିଆ ସାହିତ୍ୟ ନୁହେଁ ତେଲୁଗୁ ଭାଷା ସାହିତ୍ୟରେ ବ୍ୟୁତ୍ପତ୍ତି ଲାଭ କରିଥିବା ରାଜକବି ବିକ୍ରମ ପ୍ରାଚୀନ ତେଲୁଗୁ କାବ୍ୟଗୁଡ଼ିକ ଉପରେ ଚମତ୍କାର ଚର୍ଚ୍ଚା, ଟୀକାଟୀପ୍ପଣୀ କରିପାରୁଥିବା ମାନ୍ତ୍ରୀପ୍ରଗଡା ସୂର୍ଯ୍ୟ ପ୍ରକାଶଙ୍କ ରଚିତ କୃଷ୍ଣାର୍ଜୁନ ଚରିତ କାବ୍ୟଟିକୁ ତାଳପତ୍ର ପୋଥିରୁ ଉଦ୍ଧାର କରି ବିଶଦ୍ ବ୍ୟାଖ୍ୟାପୂର୍ବକ ଟୀକା ଟୀପ୍ପଣୀ ଲେଖିବା କମ୍ ପ୍ରତିଭାର ଅପେକ୍ଷା ରଖେନାହିଁ। ଯାହା ଫଳରେ ତେଲୁଗୁ ସାହିତ୍ୟରେ ସେ ଏକ ଉଚ୍ଚତର ଆସନ ଅଧିକୃତ କରିପାରିଥିଲେ। ତାଙ୍କ ରଚିତ କାବ୍ୟ ନାଟକ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର ପାଠ୍ୟକ୍ରମ

ରୂପେ ଗୃହୀତ ହେବା କମ୍ ଗୌରବର କଥା ନୁହେଁ। ଆନ୍ଧ୍ରଭାରତୀ ତୀର୍ଥ ଗବେଷଣା ବିଶ୍ୱବିଦ୍ୟାଳୟ ସହ ସମ୍ପୃକ୍ତ ଇଂଲଣ୍ଡ, ଆମେରିକା, ଫ୍ରାନ୍ସ, କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟର ଅନେକ ଗବେଷକ ତାଙ୍କ ସାହିତ୍ୟ ସମ୍ପଦକୁ ଉଚ୍ଚ ପ୍ରଶଂସା କରିଛନ୍ତି। ତାଙ୍କର ସାଂସ୍କୃତିକ ଜୀବନଚର୍ଯ୍ୟା ଉପରେ ଗବେଷଣା ବସିଥିବା ଡଃ ଏ.ଭି.ଡି. ଶର୍ମା କହନ୍ତି, Vikram Deo Verma was a scholar, Poet story writer, play writer and as essayist. He had not confined himself to any particular branch of litarature, that too in three languages sanskrit, Telugu and Odia" (Integration of Andhra and Odisha culture- (Page-71. by Dr. A.V.D. Sharma)

ଆନ୍ଧ୍ର ଭାରତୀ ତୀର୍ଥ ୧୯୩୩ ଖ୍ରୀଷ୍ଟାବ୍ଦରେ ସାହିତ୍ୟ ସମ୍ରାଟ Lord of Letters 'ଆନ୍ଧ୍ର ବିଶ୍ୱବିଦ୍ୟାଳୟର ୧୯୩୮ରେ କଳାପ୍ରପୂର୍ଣ୍ଣ ଡି.ଲିଟ୍ ଉପାଧି ପ୍ରଦାନ କଲା ପରେ ତାଙ୍କୁ କ୍ଷତ୍ରୀୟ ସମାଜର ସଭାପତି ରୂପେ ବରଣ କରାଯାଇଥିଲା। ଏହି ପଦବୀରେ ଅଧିଷ୍ଠିତ ହେବା ପରେ ଭୀମ ବରମ୍‌ଠାରେ ଯେତେବେଳେ ସେ ପଦାର୍ପଣ କଲେ ସେତେବେଳେ ୩୫୦ ମୈଶୁରୀ ଷଣ୍ଢ ଯୋଚା ହୋଇଥିବା ସୁସଜ୍ଜିତ ବିମାନରେ ବସାଇ ତାଙ୍କୁ ଅଭିନନ୍ଦିତ କରାଯାଇଥିଲା। ୧୯୩୪ ମସିହାରେ ଆନ୍ଧ୍ର ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ କଳାପ୍ରପୂର୍ଣ୍ଣ ବା ଡିଲିଟ୍ ଉପାଧି ତତ୍କାଳୀନ କୁଳପତି ସର୍ବପଲ୍ଲୀ ରାଧାକ୍ରିଷ୍ଣଙ୍କ ଦ୍ୱାରା ପ୍ରଦତ୍ତ ହୋଇଥିଲା। ୱାଲ୍‌ଟିଅର୍‌ରେ ଜୟପୁର କଲେଜ ଅଫ୍ ଟେକ୍ନୋଲୋଜି ଆଣ୍ଡ ସାଇନ୍ସ ପରିସରରେ ବିକ୍ରମଦେବଙ୍କ ବ୍ରୋଞ୍ଜ ମୂର୍ତ୍ତି ଉନ୍ମୋଚନ ବେଳେ ସରୋଜିନୀ ନାଇଡୁ ଯେପରି ଉଚ୍ଛ୍ୱସିତ ଭାଷାରେ ତାଙ୍କୁ ଅଭିନନ୍ଦିତ କରିଥିଲେ, ତାହା କେବଳ ଦେବତାମାନଙ୍କୁ ପ୍ରଜୁଜ୍ୟ ବୋଲି ବିକ୍ରମଦେବ ବର୍ମାଙ୍କ ସାହିତ୍ୟ ସୃଷ୍ଟିର ସଂକଳକ ପ୍ରଖ୍ୟାତ ଗାଳ୍ପିକ ଗୋପୀନାଥ ମହାନ୍ତି ସଂକଳନର ମୁଖବନ୍ଧରେ ମତବ୍ୟକ୍ତ କରିଛନ୍ତି। (ବିକ୍ରମଦେବ ରଚନାଳୀ, ମୁଖବନ୍ଧ, ପୃଷ୍ଠା-ଖ) ଭାଷାକୋଷ ପ୍ରଣେତା ଗୋପାଳ ପ୍ରହରାଜ ଶ୍ରୀ ବିକ୍ରମ ଦେବ ବର୍ମାଙ୍କୁ ଉତ୍କଳର ବିକ୍ରମାଦିତ୍ୟ ବୋଲି କହିଛନ୍ତି। ଯୁଗସ୍ରଷ୍ଟା ରାଧାମୋହନ ରାୟ ବିକ୍ରମ ଦେବ ବର୍ମାଙ୍କ ରଚନାଳୀରୁ ଅଧ୍ୟୟନ କରି କହିଥିଲେ, ବିକ୍ରମ ଦେବ ଅଗାଧ ପାଣ୍ଡିତ୍ୟ ସମ୍ପନ୍ନ ବିଧି ପ୍ରେରିତ ମହାମାନବ। (ବିକ୍ରମଦେବ ରଚନାବଳି, ୨ୟ ପୃ-୪୧୩)

ଫକୀରମୋହନ ସେନାପତି ମଧ୍ୟ ତାଙ୍କର ସ୍ୱଭାବ ସୁଲଭ ଢଙ୍ଗରେ ବିକ୍ରମଦେବ ବର୍ମାଙ୍କ ସାହିତ୍ୟ ସାଧନାକୁ ଗଭୀର ଭାବରେ ଅନୁଧ୍ୟାନ କରି ତାଙ୍କ ଉତ୍କଳ ଭ୍ରମଣ କାବ୍ୟରେ ଲେଖିଥିଲେ।

ଧନ୍ୟ ହେ ବିକ୍ରମ ଦେବ ପଣ୍ଡିତ ରତନ
ମହାରାଜା ଜୟପୁର ଉତ୍କଳ ଭୂଷଣ
ତୁମର କବିତ୍ୱ ରାଧାମାଧବ ନାଟକ
ପଢ଼ି ଜ୍ଞାନ କରେ ମୋର ଜୀବନ ସାର୍ଥକ

ଓଡ଼ିଆ ପଢ଼ିବା ଲେଖିବାକୁ ସମର୍ପିଛ ପ୍ରାଣ
ଧନ୍ୟ ଧନ୍ୟ ତୁମ୍ଭ ମାତୃଭାଷା ପ୍ରୀତି ଟାଣ
ସଂସ୍କୃତ ଉତ୍କଳ ଆନ୍ଧ୍ରଭାଷା କରିଣ ଆୟାସ
ତିନି ଭାଷା ଭଲ ରୂପେ କରିଛ ଅଭ୍ୟାସ।

(ଫକୀରମୋହନ ଗ୍ରନ୍ଥାବଳୀ, ୧ମ ଭାଗ, ଉତ୍କଳ ଭ୍ରମଣ, ପୃ-୬୬୮)

ବିକ୍ରମଦେବ ବର୍ମାଙ୍କ ଜୀବନର ଅର୍ଦ୍ଧାଧିକ ସମୟ ପ୍ରତିବେଶୀ ରାଜ୍ୟ ଆନ୍ଧ୍ରପ୍ରଦେଶରେ ଅତିବାହିତ ହୋଇଥିଲା। ଆନ୍ଧ୍ରଭାଷା ସଂସ୍କୃତି ଓ ପରମ୍ପରା ସହ ଗଭୀର ଭାବରେ ପ୍ରଭାବିତ ହୋଇଥିଲେ ସୁଦ୍ଧା ସେ ନିଜ ମାତୃଭୂମି ଓ ମାତୃଭାଷା ପ୍ରତି ତିଳେମାତ୍ର ଅବହେଳା ପ୍ରଦର୍ଶନ କରିନାହାନ୍ତି। ବରଂ ଆନ୍ଧ୍ରପ୍ରଦେଶରେ ରହି ସେଠାରେ ବସବାସ କରୁଥିବା ଓଡ଼ିଆମାନଙ୍କର ସ୍ୱାଭିମାନ ସୁରକ୍ଷା ପାଇଁ ଓଡ଼ିଆ ସମାଜ ଗଠନ କରିଥିଲେ। ସେମାନଙ୍କ ସ୍ୱାର୍ଥ ରକ୍ଷା ପାଇଁ ସଦାସର୍ବଦା ଚେଷ୍ଟିତ ଥିଲେ। ତାଙ୍କ ବହୁ ଶାସ୍ତ୍ରଦର୍ଶିତା ଓ ପ୍ରତିଭାରେ ଆନ୍ଧ୍ର ଅଧିବାସୀମାନଙ୍କୁ ଅଭିଭୂତ କରି ଓଡ଼ିଆମାନଙ୍କର ସ୍ୱାଭିମାନ ଅକ୍ଷୁଣ୍ଣ ରଖିଥିଲେ। ତେଲୁଗୁ ଭାଷା ସାହିତ୍ୟର ଇତିହାସରେ ନିଜ ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହେବାର ଯୋଗ୍ୟତା ଅର୍ଜନ କରିଥିଲେ।

ଉପାନ୍ତ ଅଞ୍ଚଳରେ ଓଡ଼ିଆଭାଷା ସାହିତ୍ୟ ସର୍ବଦା ବିପନ୍ନ ଅବସ୍ଥାରେ ଥାଏ। ଏହାର ସୁରକ୍ଷା ପାଇଁ ବିକ୍ରମ ଦେବ ବର୍ମା ସଦା ଜାଗ୍ରତ ପ୍ରହରୀ ସଦୃଶ ଥିଲେ। ଦେଶ ମିଶ୍ରଣ ଆନ୍ଦୋଳନରେ ଜୟପୁରକୁ ମାଡ୍ରାସ ପ୍ରେସିଡେନ୍ସିରୁ ଆଣି ଓଡ଼ିଶା ସହ ମିଶ୍ରଣ କରିବା ପାଇଁ ତାଙ୍କର ଅକ୍ଳାନ୍ତ ପ୍ରଚେଷ୍ଟାରେ ସେ ସଫଳ ହୋଇଥିଲେ। ସେଥିପାଇଁ ଓଡ଼ିଶାର କୋଣ ଅନୁକୋଣରୁ ତାଙ୍କ ପାଇଁ ଅଭିନନ୍ଦନର ବାର୍ତ୍ତା ଛୁଟି ଆସିଥିଲା।

କେବଳ ସୀମା ସୁରକ୍ଷା ପାଇଁ ନୁହେଁ, ସାହିତ୍ୟ ଓ ସଂସ୍କୃତି ସୁରକ୍ଷା ତାଙ୍କ ଜୀବନର ଅନ୍ୟତମ ବ୍ରତ ଥିଲା। ସେ ଜାଣିଥିଲେ ଜାତିର ପ୍ରାଣ ସ୍ପନ୍ଦନ ହେଉଛି ସାହିତ୍ୟ। ଯେ ପର୍ଯ୍ୟନ୍ତ ଜାତିର ଦର୍ପଣ ନବନବଉନ୍ମେଷଶାଳିନୀ ସାହିତ୍ୟ ସୃଷ୍ଟି ହୋଇଚାଲିଛି, ସେ ପର୍ଯ୍ୟନ୍ତ ଜାତି ଜୀବିତ ବୋଲି ଅନୁଭବ କରିହୁଏ। ସାହିତ୍ୟ ସ୍ଥାଣୁ ହେଲେ ଜାତି ଜୀବନ୍ମୃତ ହୋଇଯାଏ। ତେଣୁ ସେ ନିଜ ଜୀବନକୁ ସାହିତ୍ୟର ଆଧାର ରୂପେ ଗ୍ରହଣ କରିଥିଲେ। ସାହିତ୍ୟର ବହୁବିଧ ବିଭାଗରେ ଲେଖନୀ ଚାଳନା କରି ତାଙ୍କର ବହୁମୁଖୀ ପ୍ରତିଭାର ପରିଚୟ ପ୍ରଦାନ କରିଥିଲେ। ତାଙ୍କ ସାହିତ୍ୟ ସଂସ୍କୃତ ଭାଷାର ପ୍ରୟୋଗରେ ଯେପରି ପରିପୁଷ୍ଟ ସ୍ଥାନୀୟ କଥିତ ଭାଷାରୁ ଶବ୍ଦ ଚୟନ କରିବାରେ ସେହିପରି ତତ୍ପର। ଲୋକକଥା, ରଢ଼ି, କାହାଣୀ, କିମ୍ବଦନ୍ତୀମାନଙ୍କୁ ସାହିତ୍ୟିକ ରୂପ ଦେଇ ଉପାନ୍ତ ଅଞ୍ଚଳର ସଂସ୍କୃତି ସୁରକ୍ଷା କରିବାରେ ସମର୍ଥ ହୋଇଛନ୍ତି। ତାଙ୍କ ସାହିତ୍ୟରେ ତତ୍‌ସମ ତଦ୍‌ଭବ ବୈଦେଶିକ ଓ ଦେଶଜ ଶବ୍ଦର ସୁନ୍ଦର ସମନ୍ୱୟ ହୋଇ ପାରିଛି।

ପାରମ୍ପରିକ ଶୈଳୀରେ କବିତା ଓ ନାଟକମାନ ରଚନା କରି ତତ୍କାଳୀନ ଅବକ୍ଷୟଶୀଳ ସଂସ୍କୃତିକୁ ସୁରକ୍ଷା କରିବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ। ପାଶ୍ଚାତ୍ୟ ଶିକ୍ଷା ସଭ୍ୟତାର ଅନ୍ଧାନୁକରଣରେ ବିଭ୍ରାନ୍ତ ଯୁବ ସମାଜକୁ ଶୃଙ୍ଖଳିତ କରିବା ପାଇଁ ତାଙ୍କ ରଚିତ ଗଳ୍ପଗୁଡ଼ିକ ଏକ ନିର୍ଣ୍ଣାୟକ ଭୂମିକା ଗ୍ରହଣ କରିଥିଲେ। ପର ଘରେ ପାଇଟି କରି ଜୀବନ ବଞ୍ଚୁଥିବା ମଣିଷମାନଙ୍କ ଠାରୁ ବିଲାତ ଫେରନ୍ତା ଉଚ୍ଚଶିକ୍ଷିତ ଓ ସମ୍ଭ୍ରାନ୍ତ ପରିବାର ପର୍ଯ୍ୟନ୍ତ ସମସ୍ତଙ୍କର ଜୀବନଶୈଳୀକୁ ସେ ଗଭୀର ଭାବରେ ନିରୀକ୍ଷଣ କରିଥିଲେ ଓ ସେମାନଙ୍କର ହସ କାନ୍ଦ, ସଫଳତା ବିଫଳତା, ଗୌରବ ଅପମାନକୁ ଚିତ୍ତାକର୍ଷକ ଭାବରେ ଲେଖନୀ ମୁନରେ ଧାରଣ କରିପାରୁଥିଲେ। ସେମାନଙ୍କର ନିତ୍ୟନୈମିତ୍ତିକ ଜୀବନ ଚିତ୍ରକୁ ଗଳ୍ପଗୁଡ଼ିକରେ ସହଜ ଓ ସ୍ୱାଭାବିକ ଭାବରେ ସେ ରୂପାୟିତ କରିପାରୁଥିଲେ। ତାଙ୍କ ଗଳ୍ପଗୁଡ଼ିକରେ ଚରିତ୍ର ଓ ପରିବେଶ ପ୍ରାୟତଃ ଉପାନ୍ତ ଅଞ୍ଚଳ ଅର୍ଥାତ୍ ଅବିଭକ୍ତ କୋରାପୁଟ ଜିଲ୍ଲା ଓ ବିଶାଖାପାଟଣାରେ ଥିବା ଓଡ଼ିଆ ଜୀବନ ଶୈଳୀର ରୂପାନ୍ତର ମାତ୍ର। ଅଳ୍ପ କେତେକ ସ୍ଥାନରେ ଗଞ୍ଜାମ ବ୍ରହ୍ମପୁର, ଆସିକାର ଅଞ୍ଚଳର ପରିବେଶ ଓ ପରିସ୍ଥିତିକୁ ଆଧାର କରିଛି।

ବିକ୍ରମଦେବ ବର୍ମା ନାଟ୍ୟପ୍ରିୟ ବ୍ୟକ୍ତିତ୍ୱଟିଏ ଥିଲେ। ତା' ସହ ତାଙ୍କ ଗଭୀର ସଂଗୀତଜ୍ଞାନ ତାଙ୍କ ପ୍ରତିଭାରେ ମଣି କାଞ୍ଚନ ସଂଯୋଗ କରିଥିଲା। ତାଙ୍କର ପଦ୍ୟ ସାହିତ୍ୟ ଯେପରି ବିଭିନ୍ନ ରାଗରାଗିଣୀ ଛନ୍ଦ ଲୟ ତାଳ ଓ ଉତ୍ତମ ଶବ୍ଦ ସଂଯୋଜନାରେ ସମୁନ୍ନତ ହୋଇଥିଲା, ଗଦ୍ୟ ସାହିତ୍ୟ ସେହିପରି ନାଟକୀୟ ଛଟାରେ ଐଶ୍ୱର୍ଯ୍ୟମୟ ହୋଇଥିଲା। ସଂଳାପଧର୍ମୀ ଗଦ୍ୟ ସାହିତ୍ୟ ବିକ୍ରମ ଦେବଙ୍କର ନାଟ୍ୟ ପ୍ରତିଭାର ଅନ୍ୟତମ ପରିପ୍ରକାଶ।

ବିକ୍ରମଦେବଙ୍କ ପ୍ରବନ୍ଧ ସାହିତ୍ୟ ସଂସ୍କୃତ ଅନୁସାରୀ ଭାଷା ବହନ କରୁଥିବା ଉଚ୍ଚ ଚିନ୍ତା ଓ ଚେତନାର ସୁନ୍ଦର ପରିପ୍ରକାଶ। ପ୍ରବନ୍ଧର ଭାଷା ସମ୍ପର୍କରେ ସେ କହୁଥିଲେ ଅସମୀଚିନ ଶବ୍ଦ ପ୍ରୟୋଗ ଦ୍ୱାରା ସରସ୍ୱତୀଙ୍କର ଶରୀର ବୃଦ୍ଧି କରଣରେ ସରସ୍ୱତୀଙ୍କୁ ଗୋଦରୀ କରିବା ଅସାମଞ୍ଜସ୍ୟ। ବହୁ ସାମାଜିକ୍ ସମସ୍ୟା ଓ ନିତ୍ୟ ନୈମିତ୍ତିକ ଜୀବନର ବହୁ ବ୍ୟତିକ୍ରମ ଜୀବନଶୈଳୀକୁ ଆଧାରା 'କରି ତାଙ୍କ ପ୍ରବନ୍ଧଗୁଡ଼ିକ ଓଡ଼ିଆ ସାହିତ୍ୟ ପାଇଁ ଅମୂଲ୍ୟ ସମ୍ପଦ। ସମାଜ ଓ ଜୀବନକୁ ଶୃଙ୍ଖଳିତ କରିବା ସଙ୍ଗେ ସଙ୍ଗେ ସୁସ୍ଥ ସାହିତ୍ୟ ରଚନା କରିବା ପାଇଁ ସେ ସାହିତ୍ୟ ସ୍ରଷ୍ଟାମାନଙ୍କୁ ଯେଉଁ ନିର୍ଦ୍ଦେଶ ଦେଇଥିଲେ ତାହା ମଧ୍ୟ ଗୋଟିଏ ସଂହତ ଓ କଳାତ୍ମକ ସାହିତ୍ୟ ସୃଷ୍ଟି ଦିଗରେ ପ୍ରମୁଖ ଭୂମିକା ଗ୍ରହଣ କରିଛି। ଛନ୍ଦ ଅଳଙ୍କାର ପାଖରୁ ଆରମ୍ଭ କରି ନାଟ୍ୟକଳା ପର୍ଯ୍ୟନ୍ତ ଆଧୁନିକ ଗଳ୍ପ କବିତାର ବ୍ୟତିକ୍ରମକୁ ସେ ଅଙ୍ଗୁଳି ନିର୍ଦ୍ଦେଶ କରି ପରମ୍ପରାକୁ ସୁରକ୍ଷା କରିବା ଥିଲା ତାଙ୍କ ସାରସ୍ୱତ ବ୍ୟକ୍ତିତ୍ୱର ଅନ୍ୟତମ ବୈଶିଷ୍ଟ୍ୟ।

ଅନୁବାଦ ସାହିତ୍ୟ ସମ୍ପର୍କରେ ତାଙ୍କର ଯୁଗୋପଯୋଗୀ ବିଚାର ପ୍ରକୃତରେ ପ୍ରଶଂସାଯୋଗ୍ୟ। କେବଳ ଅନୁବାଦ ପାଇଁ ଅନୁବାଦ କାର୍ଯ୍ୟକୁ ସେ ପସନ୍ଦ କରନ୍ତି ନାହିଁ। ପ୍ରକୃତରେ ଯେଉଁ ଗୁଡ଼ିକ ସତ୍ ସାହିତ୍ୟ, ସମାଜ ଓ ଜୀବନକୁ ସକାରାତ୍ମକ ବାର୍ତ୍ତା ଦେଉଥିବା

ଯେ କୌଣସି ଭାଷାର ସାହିତ୍ୟକୁ ଆମ ଭାଷାକୁ ଅନୁବାଦ କରିବା ଦିଗରେ ସେ ଗୁରୁତ୍ୱ ଦେଉଥିଲେ। ପ୍ରସଙ୍ଗ କ୍ରମେ ସେ ଦ୍ୱିଜେନ୍ଦ୍ର ଲାଲ୍‌ଙ୍କର ରଚିତ ଅହଲ୍ୟା କାବ୍ୟରେ କବି ଅହଲ୍ୟାକୁ ଯେଉଁପରି କାମୁକୀ ନିର୍ଲ୍ଲଜା ପୁତ୍ରଘାତିନୀ ଏବଂ ଇନ୍ଦ୍ରଙ୍କୁ କାମୁକ, ଅସତ୍ୟବାଦୀ, ବିଶ୍ୱାସଘାତକ ବୋଲି ଚିତ୍ରିତ କରିଛନ୍ତି ତାହାକୁ ସେ ନିନ୍ଦା କରିଛନ୍ତି। ତାଙ୍କ ମତରେ ପୁରାଣ ବର୍ଣ୍ଣିତ ଋଷିପତ୍ନୀ ଓ ଦେବରାଜଙ୍କୁ ନାୟକ ନାୟିକା ନ କରି କଲିକତାର ଜନୈକ ପୁଂଶ୍ଚଳିକି ନାୟିକା ଏବଂ ଜନୈକ ଗୁଣ୍ଡାକୁ ନାୟକ କରି ନିଜ କାବ୍ୟ ରଚିଥିଲେ ଭଲ ହୋଇଥାନ୍ତା ପରା !

ଏଥିରୁ ବିକ୍ରମାଦିତ୍ୟ ସମ୍ଭ୍ରାନ୍ତ ରୁଚି, ପରମ୍ପରା ପ୍ରତି ଥିବା ଶ୍ରଦ୍ଧା ଓ ସମ୍ମାନର ପରିଚୟ ମିଳେ। ଚିନ୍ତାରେ ମୌଳିକତା ଓ ନିର୍ଭୀକତା ଥିବା ସମାଲୋଚକଟିଏ ହିଁ ଗୋଟିଏ ସାହିତ୍ୟ ସୃଷ୍ଟି ଉପରେ ଏହିପରି ମନ୍ତବ୍ୟ ପ୍ରଦାନ କରିପାରେ।

ବିକ୍ରମ ଦେବ ବର୍ମାଙ୍କର ଓଡ଼ିଆ ସାହିତ୍ୟ ପ୍ରତି ଅବଦାନକୁ ଆକଳନ କଲେ ହୃଦ୍‌ବୋଧ ହୁଏ, ସେ ଯେଉଁ କାଳରେ ସାହିତ୍ୟ ସୃଷ୍ଟରେ ବ୍ରତୀ ଥିଲେ ମଧ୍ୟ ଓଡ଼ିଶାରେ ରାଧାନାଥ ରାୟ, ଫକୀର ମୋହନ ସେନାପତି, ମଧୁସୂଦନ ରାଓଙ୍କ ଭଳି ପ୍ରଚଣ୍ଡ ପ୍ରତିଭାଧାରୀ ବ୍ୟକ୍ତିତ୍ୱ ଓଡ଼ିଆ ସାହିତ୍ୟର ମଙ୍ଗ ଧରିଥିଲେ। ଓଡ଼ିଆ ସାହିତ୍ୟରେ ସେମାନେ ସମସ୍ତେ ଜଣେ ଜଣେ ଥିଲେ ପଥିକୃତ ଶିଳ୍ପୀ। ସେହି ତୁଳନାରେ ବିକ୍ରମ ଦେବ ବର୍ମାଙ୍କର କୌଣସି ପଥିକୃତ ସୃଷ୍ଟି ନଥିଲେ ସୁଦ୍ଧା ଉପାନ୍ତ ଅଞ୍ଚଳରେ ଜାଗ୍ରତ ପ୍ରହରୀ ସଦୃଶ ସେ ଭାଷା ସାହିତ୍ୟ ସୁରକ୍ଷା କବଚ ଥିଲେ। ସାହିତ୍ୟ ସୃଷ୍ଟି ସହ ସାହିତ୍ୟର ପ୍ରଚାର ପ୍ରସାର, ଶାସ୍ତ୍ରଚର୍ଚ୍ଚା ଆଦି କାର୍ଯ୍ୟରେ ସେ ଅହରହ ମନୋନିବେଶ କରିଥିଲେ। ତାଙ୍କ ସମ୍ପର୍କରେ କବିଶେଖର ଚିନ୍ତାମଣି କହିଥିଲେ- ମହାରାଜ ଶ୍ରୀ ବିକ୍ରମ ଦେବ ବର୍ମା ସରସ୍ୱତୀଙ୍କର ବରପୁତ୍ର। ପୁଣି କମଳା ମାତାଙ୍କର ଅଙ୍କ ମଣ୍ଡନ କରିଛନ୍ତି। ଉଭୟ ମାତାଙ୍କ ଠାରୁ ସେ ଦୁଇଟି ରାଜ୍ୟ ପ୍ରାପ୍ତ ହୋଇଛନ୍ତି। ଗୋଟିଏ ଜୟପୁର ରାଜ୍ୟ, ଅନ୍ୟଟି ସାରସ୍ୱତ ରାଜ୍ୟ। ଗୋଟିଏ ପାର୍ଥିବ, ଅନ୍ୟଟି ଜ୍ୟୋତିର୍ମୟ ଶାଶ୍ୱତ ରାଜ୍ୟ। ତାଙ୍କ ମୃତ୍ତିକା ରାଜ୍ୟ ପରି ସାରସ୍ୱତ ରାଜ୍ୟ ମଧ୍ୟ ବିପୁଳ ବିସ୍ତୃତ। ସାହିତ୍ୟ ସାଧନାର କ୍ଷେତ୍ର ସୀମାତୀତ ନ ହେଲେ ହେଁ ବିରାଟ। ଦୁଇ ମାତାଙ୍କର ସମାନ ଭାବରେ ସ୍ନେହ ଲାଭ କରି ସେ ଲକ୍ଷ୍ମୀ, ସରସ୍ୱତୀଙ୍କ ବିରୋଧ ଅପବାଦର ବ୍ୟର୍ଥତା ସପ୍ରମାଣ କରିଛନ୍ତି। (ଚିନ୍ତାମଣି ମହାନ୍ତି, ଜୟପୁର, ପୃ-୧୮୭)

ପ୍ରକୃତରେ ରାଜର୍ଷି ବିକ୍ରମ ଦେବ ବର୍ମା ଉତ୍କଳ ଭାରତୀଙ୍କ ବରପୁତ୍ର। ପୁଣି ଉପାନ୍ତ ଅଞ୍ଚଳ ତାଙ୍କର କର୍ମକ୍ଷେତ୍ର ଥିବାରୁ ଭାଷା ସାହିତ୍ୟ ଓ ଉପାନ୍ତ ଅଞ୍ଚଳର ସଂସ୍କୃତି ସୁରକ୍ଷା ପରି ଗୁରୁ ଦାୟିତ୍ୱ ସ୍ୱତଃ ସେ ବହନ କରିଥିଲେ। ତାଙ୍କ ପାଖକୁ ଓଡ଼ିଶାରୁ ଶୁଭେଚ୍ଛା ସହୃଦୟତାର ବାର୍ତ୍ତା ଆସୁଥିଲା। ସେ ଏହି ଆଦିବାସୀ ଅଧ୍ୟୁଷିତ ପାହାଡ଼ ଜଙ୍ଗଲ ପରିବେଷ୍ଟିତ ଉପାନ୍ତ ଅଞ୍ଚଳଟିରେ ଭାଷା ସାହିତ୍ୟ ସୁରକ୍ଷାର ଦାୟିତ୍ୱ ଯୁଗପୁରୁଷ ପରି ବହନ କରିଥିଲେ।

ସେଥିପାଇଁ ସେ ଓଡ଼ିଆ ଜାତିର ଚିର ନମସ୍ୟ।

# ପରିଶିଷ୍ଟ

## ଜୟପୁର ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶରେ ଅନ୍ତର୍ଭୁକ୍ତ ହେବାପରେ ବିକ୍ରମ ଦେବବର୍ମା ପାଇଥିବା ପତ୍ର:

ଶ୍ରୀମାନ୍ ମହାରାଜ,

ଜୟପୁର ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ଅନ୍ତର୍ଭୁକ୍ତ ହେଉଅଛି। ଜୟପୁର ଯେ ଓଡ଼ିଆ ରାଜ୍ୟ, ସେ କଥା ଆମ୍ଭମାନଙ୍କୁ ଭୁଲିବାକୁ ଚେଷ୍ଟା କରିବାକୁ ପଡୁଥିଲା। କିନ୍ତୁ ବର୍ତ୍ତମାନ ସତ୍ୟର ଜୟ ଘଟିଅଛି।

ଭଗବାନ ଛାମୁଙ୍କ ସ୍ୱାସ୍ଥ୍ୟ ସହିତ ଦୀର୍ଘ ଜୀବନ ଦିଅନ୍ତୁ। ତାହାହେଲେ ଛାମୁ ଉତ୍କଳ ରାଜ୍ୟର ଭାଗ୍ୟ ନିଜ ହାତରେ ଗଠନ କରିବାରେ କୃତକାର୍ଯ୍ୟ ହୋଇପାରିବେ।

ମୁଁ କାର୍ଯ୍ୟ ଉପଲକ୍ଷ୍ୟରେ ଏଠାକୁ ଆସିଛି। ଶୀଘ୍ର ଏଠାରୁ ବାଣପୁର ଫେରିବି। ଛାମୁଙ୍କ କୁଶଳ ଆଶାକରେ।

ଛାମୁଙ୍କର ସ୍ନେହାଧୀନ
ଗୋଦାବରୀଶ ମିଶ୍ର

To

The Maharaja of Jeypore (Vizag.)

Joint Committee Report Recommends inclusion of Jeypore. delighted, hearty congratulation.

Shree Krishna Mohapatra.
Great Indian Hotel

To

The Maharaja of Jeypore (Vizag.)

Heartiest congratulation on Jeypore's inclusion in Orissa.

Nilakantha Das

To

Raja Saheb, Jeypore

Congratulation for Jeypore inclusion.

Madan Mohan Rath.

To

Raja Saheb, Jeypore, Jeypore (Vizag.)
Hearty Congratulations

Anataram Rath.

To

Maharaja Saheb, Jeypore (Vizag.)
Happy Jeypore Paralakhemundi included Orissa Province.

Dinabandhu Panda.

To

Maharaja Saheb, Jeypore (Vizag.)
Hearty Congratulation for inclusion Jeypore, Orissa.

New Orissa.

To

Maharaja Saheb, Jeypore (Vizag.)
Heart leaps with joy at announcement.

Editore, Jubaka fund Oriya.

To

Kumar Bidyadhar Singh, Jeypore, Vizag.
Please accept congratulation, your afforts crowned success.

Pyari Mohan Panigrahi.

To

Maharaja Jeypore, Vizag.
Hearty Congratulation, Pray co-operation guide.

Madhusudan Panigrahi

To

Raja Saheb Jeypore, Vizag.
Jeypore inclusion news in Orissa received with joy

Raja of Dharakote.

To

Maharaja Jeypore, Vizag.
Welcome, Jeypore, Orissa Province

Balakrishna Rath.

To

Raja Saheb Jeypore, Vizag.

Thank God Utkal gets her Vikramarka restored to her.

Praharaja.

To

Maharaja Jeypore

Orissa rejoices to secure Jeypore in new province, Jeypore will be brightest jewel of Orissa province, .Felicitations.

B.Das

To

Maharaja Jeypore

Tikkali Oriyas Heartily congratulate Jeypore inclusion.

Tikkali Oriyas

To

Raja Saheb, (Vizag.)

Utkal Sahitya Samaj hails your entry Orissa

Secretary
Utkal Sahitya Samaj

To

His Highness the Maharaja of Jeypore

May it please your Highness.

Please accept our heartfelt thanks for kind help rendered in Orissa amalgamation.

We beg to remain.
May it please your highness
Your Highness's most obedient
Servants
inhabitants of
Gosaninowgam
25-11-34

କଟକ
୨୪.୧୧.୩୫

ପ୍ରିୟ ଶ୍ରୀ ମହାରାଜ,

ଆପଣଙ୍କ ସ୍ନେହମୟ ପତ୍ର ପାଇଅଛି। ଜୟପୁରକୁ ଓ ତହିଁ ସଙ୍ଗେ ଆମ ବିକ୍ରମ ଦେବଙ୍କୁ ପାଇଲୁଁ, ଏହି ସମ୍ବାଦରେ ପ୍ରତ୍ୟେକ ଓଡ଼ିଆ ପୁଅର ମନ କୁଣ୍ଢେମୋଟ ହୋଇଯାଇଅଛି। ବର୍ଷକ ପୂର୍ବେ ଗୋଟାଏ ଉଡ଼ା ଖବର ଶୁଣି ମୁଁ ଜୟପୁର ଓଡ଼ିଶାରେ ମିଶିବା ଯୋଗୁଁ ଆନନ୍ଦ ପ୍ରକାଶ କରି ଆପଣଙ୍କଠାକୁ ଟେଲିଗ୍ରାମ କରିଦେଲି। ପରେ ଏ ଖବର ମୂଳରେ କୌଣସି ସରକାରୀ ନିଦର୍ଶନ ନଥିବାର ଜାଣି ବ୍ୟଥିତ ହୋଇଥିଲି, ପ୍ରଭୁଙ୍କ କୃପାରୁ ମୋର ବର୍ଷକ ପୂର୍ବର ସେହି ଟେଲିଗ୍ରାମର ଶୁଭ ବଚନ ଆଜି ସଫଳ ହେଲା। ଈଶ୍ୱର କୋଟିଏ ଓଡ଼ିଆଙ୍କ ଗୁହାରୀ ଶୁଣିଲେ ଓ ଜୟପୁରବାସୀ ଦଶଲକ୍ଷ ଓଡ଼ିଆଙ୍କ ପ୍ରାଣ ରଖିଲେ। ଶ୍ରୀ ବିକ୍ରମ ଦେବ ଜୟପୁର ଗାଦିରେ ବସି ନଥିଲେ ଜୟପୁର ଓଡ଼ିଆରେ ମିଶିବା କଥା କେବଳ କଥାରେ ହିଁ ପର୍ଯ୍ୟବସିତ ହୋଇଥାଆନ୍ତା।

ଆଜି ଓଡ଼ିଶା ପ୍ରଦେଶର ରାଜାମହାରାଜାଙ୍କ ମଉଡ଼ମଣି ରୂପେ ଉତ୍କଳର ବିକ୍ରମାଦିତ୍ୟ ଶ୍ରୀ ବିକ୍ରମଦେବ ବିରାଜିବେ। ବିଲାତରୁ ପାରଳା ରାଜା ସାହେବ ଛାମୁଙ୍କଠାକୁ ଯେଉଁ ଆଶ୍ୱାସନା ବାଣୀ ଲେଖିଥିଲେ, ତାହା ହିଁ ସଫଳ ହେଲା।

ଛାମୁଙ୍କର ସ୍ନେହବଦ୍ଧ
ଗୋପାଳଚନ୍ଦ୍ର ପ୍ରହରାଜ

ଖରସୁଆଁ, ସିଂହଭୂମ
ତା: ୨୦.୧୧.୧୯୩୪

## ଓଁ ତତ୍‌ସତ୍

ସ୍ୱସ୍ତି ଶ୍ରୀ ପ୍ରବଳପ୍ରତାପୋଦିତପ୍ରତାପ ଦାନସମ୍ପନ୍ନ ଶ୍ରୀମାନ୍ ମହାରାଜାଧିରାଜ ଉତ୍କଳ ଜାତୀୟ ଜୀବନ ସମ୍ରାଟ କବିବର ଶ୍ରୀମାନ୍ ଶ୍ରୀ ଶ୍ରୀ ଶ୍ରୀ ବିକ୍ରମଦେବ ବର୍ମା ମହାତ୍ମେଷୁ ଜୟପୁରାଧୀଶ୍ୱରେଷୁ-

ଶୁଭାଶିଷାଂମାଳା ବିଳସନ୍ତୁତମାମ୍

ଶ୍ରୀମନ୍ ମହାରାଜାଧିରାଜ,

ଶ୍ରୀ ଛାମୁଙ୍କ ଅକ୍ଲାନ୍ତ ଯତ୍ନ, ବଦାନ୍ୟତା ଓ ଜ୍ଞାନକର୍ମବୀରତାଦି ହେତୁ ଉତ୍କଳର ଆଜି ସରକାରଙ୍କ ସିଲେକ୍ଟ କମିଟି ରିପୋର୍ଟ ଘୋଷଣାରୁ ଅନେକ ଅଂଶେ ଯୋଡ଼ା ଯାଇଅଛି।

ଉତ୍କଳର ବର୍ତ୍ତମାନ ଶେଷ ସୀମା ଜୟପୁର ରାଜ୍ୟର ଶ୍ରୀଛାମୁ ଅଧିଶ୍ୱର ଥିବାରୁ ସେ ଦକ୍ଷିଣ ସୀମା ଉତ୍କଳ ସହିତ ଯୋଡ଼ାଗଲା। ଏଥି ସକାଶେ ଶ୍ରୀଛାମୁଙ୍କୁ ମୁଁ ଉତ୍କଳର ଉତ୍ତରାଂଶ ସିଂହଭୂମ ତରଫରୁ ହୃଦୟର ସହିତ ଅଭିନନ୍ଦିତ କରୁଅଛି।

ଶ୍ରୀ ଛାମୁ ଯେଉଁ ସିଂହଭୂମକୁ ହୃଦୟ ସହିତ ସ୍ନେହ ଓ ଦୟା ଦୃଷ୍ଟିରେ ଦେଖିଆସୁଅଛନ୍ତି ସେହି ସିଂହଭୂମର ଉଦ୍ଧାର ସାଧନ ଶ୍ରୀଛାମୁଙ୍କ କରୁଣା ଦୃଷ୍ଟି ଉପରେ ନିର୍ଭର କରୁଅଛି।

ସିଂହଭୂମ ଭାଷା ଇତିହାସ ବହି ଖଣ୍ଡିଏ ଲେଖିଅଛି। ଉଦାୟମାନ କୁମାର ଶ୍ରୀମାନ୍ ବିଦ୍ୟାଧର ସିଂହଦେବ B.L. ଏହାର ଭୂମିକା ଲେଖିଅଛନ୍ତି। ବହି ଖଣ୍ଡିକ ବର୍ତ୍ତମାନ ମୁଦ୍ରିତ ହେଉଅଛି। ମୁଦ୍ରଣ ଶେଷ ହେବା ମାତ୍ରକେ ଶ୍ରୀ ଛାମୁଙ୍କ କରକମଳରେ ଅର୍ପଣ କରି ନିଜକୁ ମୁଁ ଧନ୍ୟ ମଣିବି ବୋଲି ଆଶା କରେ। ପ୍ରଭୁ କୃପାରୁ ଏପରି ସୁ-ଅବସର ଆସି ଉପସ୍ଥିତ ହେଉ, ଯହିଁରେ ଶ୍ରୀ ଛାମୁଙ୍କ ସୌମ୍ୟ ମୂର୍ତ୍ତି ଦର୍ଶନ କରି ସିଂହଭୂମ ନିଜକୁ ଧନ୍ୟ ମଣିବ ଓ ସିଂହର ଭୂମି ବୋଲି ଜଗତରେ ଗୌରବାନ୍ୱିତ ହେବ। ପ୍ରଭୁଙ୍କ ଅଶେଷ କୃପାରୁ ଶ୍ରୀଛାମୁ ସ୍ୱାସ୍ଥ୍ୟ ସହ ଦୀର୍ଘଜୀବୀ ହୁଅନ୍ତୁ।

।ଇତି।

ଶ୍ରୀମତଃ ଶୁଭାକାଂକ୍ଷୀ

ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ।

The Utkal Sahitya Samaj, Cuttack

P.O. Cuttack
24.11.1934

To

The Raja Saheb of Jeypore

Sir,

Pray accept our hearty expressions at the news of Jeypore coming into the ken of new Orissa. Sir, your labours in the past and your constant and silent labours for the cause of Oriya amalgamation are too great for words. Our breasts are rising with a warmth of joy and happiness, ever-expending with the thought that through your blessings and good will, the cause of Orissa and specially Oriya literature will thrive with ever increasing amplitude and move on

right lines. Your presence will ever be felt as source of illumination to the Oriya race through literature which really gives tongue to the mute.

With sincerest love & gratitude,

Your sincerely,
Lakshmi Narayan Sahu,
Secretary.

# ଶ୍ରୀ ବିକ୍ରମଦେବ ବର୍ମା ରଚନାଳିର ସୂଚୀପତ୍ର

## ରଚନାଳୀ ପ୍ରଥମ ଭାଗ


| ବିଷୟ | ପୃଷ୍ଠା |
|---|---|
| ବନ୍ଦନା | ୧ |
| ପ୍ରାର୍ଥନା | ୨ |
| ସରସ ଗୀତାବଳୀ | ୩ |
| ଅର୍ନ୍ତଲିପି ଆଦି | ୧୪ |
| ସୁଧାକରତତ୍ତ୍ୱ | ୧୮ |
| ପ୍ରଶ୍ନୋତ୍ତର ଗୀତ | ୧୮ |
| ରାବଣତତ୍ତ୍ୱ | ୧୯ |
| ସୁନାରୂପା | ୨୦ |
| ଶୀଷକ ପଦ୍ୟ | ୨୦ |
| ରସ ବିଷୟ | ୨୧ |
| ଋତୁବର୍ଣ୍ଣନ | ୨୨ |
| ଗୁରୁଦକ୍ଷିଣା | ୨୯ |
| କି ହେଲା | ୩୩ |
| ଏବ ଚଳଣି | ୩୩ |
| ବେଦ ପୌରୁଷେୟ | ୩୪ |
| ଖ୍ରୀଷ୍ଟଭକ୍ତ | ୩୪ |
| ନାହିଁ ନାହିଁ ତିଳେ | ୩୫ |
| ଅପୂଜିତ ବିଧାତା | ୩୫ |
| ପ୍ରହେଳିକା | ୩୬ |
| ଲୋକୋକ୍ତିତତି | ୩୭ |
| ରାଜଧର୍ମ | ୫୪ |
| ସେ ଭାରତ ଆମ୍ଭର | ୫୫ |
| ଅଦ୍‌ଭୁତ ସତ୍ୟ | ୫୫ |
| ରାବଣୋପଦେଶ | ୫୬ |
| ପରମ ପବିତ୍ରକୁ | ୫୮ |
| ଅଦ୍ୱୈତେ ଜ୍ଞାନ | ୫୮ |
| ମଥୁରା ବାସ | ୫୮ |
| କେତେ ଦେଶଭକ୍ତ | ୫୯ |
| ନିର୍ହେତୁକା ପ୍ରୀତି | ୫୯ |
| ଉପଦେଶ | ୬୦ |
| କିସତୃଷ୍ଣାକର | ୬୧ |
| ନୀତିବାକ୍ୟାବଳୀ | ୬୧ |
| ଗୌରୀସ୍ତବ ଆଦି | ୬୩ |
| ଶ୍ଲୋକପଞ୍ଚକ | ୬୫ |
| ବସ୍ତୁର ମାଳିକା | ୬୮ |

ଶ୍ରୀକୃଷ୍ଣପଞ୍ଚରତ୍ନ ସ୍ତୋତ୍ରଂ ୭୧
ଶ୍ରୀ ରାଧିକାଧବ ପଞ୍ଚରତ୍ନସ୍ତୋତ୍ରଂ ୭୧
ଶ୍ରୀ କୃପାମ୍ଭୋଧ୍ୟଷ୍ଟକଂ ୭୨
ଶ୍ରୀ ସହିତାଷ୍ଟକଂ ୭୩
ଶ୍ରୀହରି କବଚ ୭୪
ନବଗ୍ରହ ସଂଗ୍ରହ ସ୍ତବ ୭୫
ଶ୍ରୀରାମଚରିତ ଗୀତ ୭୫
ଶ୍ରୀ କେଶବ ଚଉତିଶା ୭୯
ଶ୍ରୀକୃଷ୍ଣ ନକ୍ଷତ୍ରମାଳା ୮୨
ଶ୍ରୀଧର ନବରତ୍ନମାଳା ୮୩
ଗୋପାଳ ନବଗ୍ରହ ମାଳା ୮୪
ମତ୍ତକୋକିଳ ଶ୍ଳୋକ ୮୫
ଶ୍ରୀଚୈତନ୍ୟ ଶ୍ରେଷ୍ଠତ୍ୱ ୮୬
ଭକ୍ତିସଙ୍ଗୀତ ୮୭
ଦଣ୍ଡକ ୧୦୫
ଶ୍ରୀପୁରୁଷୋତ୍ତମ କ୍ଷେତ୍ରତତ୍ତ୍ୱ ୧୦୬
ନେତ୍ରରହସ୍ୟ ୧୦୭
ଖାଇପତ୍ରଘାସ ୧୧୦
ଜ୍ୟୋତିଷ କବିତା ୧୧୧
ତୁଳସୀ ରାମାୟଣ ଆଦିକାଣ୍ଡ ୧୧୫
ଶ୍ରୀ ଗୋବିନ୍ଦମଞ୍ଜରୀକାବଳିଃ ୩୧୫
ଜୀବରେ ମୃତଜୀବ ୩୨୩
ପୁରୁଷୋତ୍ତମ ଚାତୁରୀ ୩୨୫
ଗୋବରିଆ ୩୨୯
ଗୁଣବତୀପତ୍ନୀ ୩୩୫
ସୁଲକ୍ଷଣା ୩୪୪
ଲଳିତା ୩୫୧
ନିଜ ଗାଡ଼େ ନିଜେ ପଡ଼େ ୩୫୫
ବାଳିକା ବିବାହ ୩୫୮
ଭୂତଭୟ ୩୬୭
ଅଙ୍ଗହୀନ ଅନ୍ନକଷ୍ଟୀ ୩୭୨
କାଦମ୍ବରୀ କଥାସାର ୩୭୬
ଭେଦ କେବଳ ପାତ୍ରାଳୀରେ ୩୮୯
ଗ୍ରୀକ୍ ପୁରାଣ କଥା ୩୯୫
ରାଜାଶ୍ରୟବିଧାନ ୩୯୮
ଆର୍ଯ୍ୟ ବିବାହାତଙ୍କ ୪୦୦
ଭଣ୍ଡଧର୍ମୀ ୪୦୫
ବୁଦ୍ଧଚରିତ ନାଟକ ୪୦୭
ଉତ୍କଳ କୁନ୍ଦମାଳା ନାଟକ ୪୩୯

## ରଚନାଳୀ ଦ୍ୱିତୀୟ ଭାଗ

ବିଷୟ ପୃଷ୍ଠା

ଶ୍ରୀରାମ ସ୍ତୋତ୍ରମ ୧
ଶ୍ରୀରାଧାକୃଷ୍ଣ ସ୍ତୁତି ୪
ଶ୍ରୀ କୃଷ୍ଣସ୍ତୋତ୍ରମ ୮
ଶ୍ରୀ କୃଷ୍ଣଚୈତନ୍ୟ ଜୟତି ୧୨
ଶ୍ରୀ ଦୁର୍ଗାକବଚଂ ୧୩
ଚିତ୍ତସମର୍ପଣ ୧୪
ଭାରତ ୧୫
ଆଶ୍ୱିନ ପୂର୍ଣ୍ଣିମା ୧୬
ସୀସକ ପଦ୍ୟ ୧୯
ଗ୍ରହଣ ୧୯
ବାହନ ୨୨

ପୁରୁଣା ଗଳ୍ପ ୨୩
ଚାର୍ବାକଦର୍ଶନ ୨୭
ପୁରାଣବୋଧ ୨୯
ରୂପକର ନାୟିକାନାୟକାଦି ବିବରଣ ୩୧
ଅଶ୍ଳୀଳ ବିଗ୍ରହ ୩୩
ସମର୍ଥିତ ପ୍ରତ୍ୟୁତ୍ତର ୩୪
ବିବିଧ ସ୍ତୋତ୍ରାଣୀ ୩୬
ବେଦାନ୍ତ ମୀମାଂସା ୪୦
ଛନ୍ଦୋଲକ୍ଷଣ ୪୧
ନବରସ ୪୨
ତ୍ରୟୋବିଂଶତ୍ୟଲଙ୍କାରୋଦାହରଣଗଣ ୪୪
ରୂପକର ଭାବାଦି ୪୫
ଅବର୍ଗ୍ୟ ବକାର ବିଚାର ୪୮
ବୃନ୍ଦା ୪୮
ମଧୁକଂରାତି ଓ ନୀତିବାକ୍ୟ ୪୯
ସମାସସୁମଗୁଚ୍ଛ ୫୦
ସ୍ତବ ୬୫
ଈଶୋବାସ୍ୟୋପନିଷଦ ୬୬
ଶ୍ଳୋକାଃ ୭୧
ଗ୍ରହଧ୍ୟାନ ୭୨
ଶ୍ରୀକୃଷ୍ଣ ପଞ୍ଚରତ୍ନସ୍ତୋତ୍ରମ୍ ୭୩
ବୈଷ୍ଣବଧର୍ମ ୭୪
ଉପଦେଶ ୭୫
ସପ୍ତାଶ୍ୱତତ୍ତ୍ୱ ୭୫
ଗୁଣ୍ଡିଚା ସମ୍ବନ୍ଧରେ ୭୭
ଧର୍ମଘଟ ୭୯
ସମ୍ମେଳନୀ ୭୯
ବିବରାଶବ୍ଦ ଠିକ୍ ନୁହେଁ ୭୯
ପ୍ରଶ୍ନୋତ୍ତର ୮୧
ନିର୍ମାଲ୍ୟ ୮୧
ବୈଦ୍ୟନାରାୟଣହରିଃ ୮୨
ବାହନ ୮୨
ବର୍ତ୍ତମାନର ଗଳ୍ପ ଲେଖାର ନୀତିନାହିଁ ୮୩
ତ୍ରିନାଥ ମେଳାର ଅସମୀଚୀନତା ୮୪
ନିଶ ଦାଢୀ ୮୫
ଓଡ଼ିଆ ପ୍ରଶ୍ନକାଗଜରେ ଭୁଲ୍ ୮୬
ନାଟ୍ୟକଳା ୮୭
କଥାନିୟମ ୯୨
ମେଘଦୂତ ୯୭
ଦୁଷ୍ଟ କାବ୍ୟାନୁବାଦ ୯୯
ସାଂଖ୍ୟଦର୍ଶନ ୧୦୧
ଇତିହାସ ଲେଖକଙ୍କୁ ଜଣାଣ ୧୦୭
ବଳି ୧୧୫
କର୍ମ ୧୧୯
ଚିକିତ୍ସା ୧୨୬
ଡଙ୍ଗରଦେଇଙ୍କ ଚିନ୍ତା ୧୩୦
ବାନରଜାତି ୧୩୨
ଉତ୍କଳ ସମ୍ମେଳନୀ ୧୩୫
ବର୍ଷା ସମୟ ୧୫୧
ଗୁରୁ ୧୫୩
ଗୋରୀର ଘରକରଣା ୧୫୮
ପତ୍ର ୧୬୩
ଆଧୁନିକ କବିତ୍ୱ ୧୬୯
ମାଲୋ ଚରିତ୍ର ୧୭୧
ମୋ କବିତା ୧୭୬
ଫାଲଗୁନ ଶୁକ୍ଳଚତୁର୍ଦ୍ଦଶୀ ଏବଂ ପୂର୍ଣ୍ଣିମା ୧୭୯

ହେରା ପଞ୍ଚମୀ ୧୮୧
କଳେରାକାଦାନଂ ୧୮୩
ଗାନ୍ଧାରୀ ଏକାଦଶୀ ୧୮୪
ମୈତ୍ରୀ ୧୮୫
ଚନ୍ଦ୍ରହାସ ଚରିତ ୧୮୯
ବିଶ୍ୱରୂପ ସ୍ତବ ୧୯୪
ବନ୍ଦନା ଚତୁଷ୍ଟୟଂ ୧୯୫
ଶ୍ଳୋକପଞ୍ଚକଂ ୧୯୫
ଶ୍ରୀରାଧିକା କୃଷ୍ଣ ସ୍ତୋତ୍ରଂ ୧୯୬
ଶ୍ଳୋକଦ୍ୱୟମ୍ ୧୯୮
ଶ୍ରୀକୃଷ୍ଣପଞ୍ଚରତ୍ନ ସ୍ତୋତ୍ରମ୍ ୧୯୯
ଗ୍ରହଧ୍ୟାନ ଶ୍ଳୋକାଃ ୧୯୯
ଶ୍ରୀସହିତାଷ୍ଟକଂ ୨୦୧
ବିବିଧ ଶ୍ଳୋକାଃ ୨୦୨
କେଶବ ସ୍ତୋତ୍ରମ୍ ୨୦୫
ଅନ୍ୟାନ୍ୟ ଶ୍ଳୋକାଃ ୨୦୮
ବିଦ୍ୟୁନ୍ମାଳା ୨୧୨
ଶ୍ରୀରାମସ୍ତବମ୍ ୨୧୩
ଅନ୍ୟାନ୍ୟ ସ୍ତବ ୨୧୪
ମନ୍ୱାଦିଃ ୨୨୪
ନବଗ୍ରହସ୍ତବଃ ୨୨୪
ଶ୍ରୀପୁରୁଷୋତ୍ତମକ୍ଷେତ୍ରତତ୍ତ୍ୱ ୨୨୫
ଦଶମହାବିଦ୍ୟା ୨୨୬
ସ୍ତବସ୍ତୋତ୍ରାଦିଦେବାଦେବୀଙ୍କର ୨୨୭
ପାପପରିଣାମ ୨୩୯
ମତ
ନିର୍ମାଲ୍ୟନିର୍ଣ୍ଣୟ
ଶ୍ରୀ ରାଧାଚରଣ ପଣ୍ଡାଙ୍କ ଲିଖିତ
ରାଜକବି ଶ୍ରୀବିକ୍ରମଦେବବର୍ମା ୨୪୩
କବିବର ଶ୍ରୀ ଚିନ୍ତାମଣୀ ମହାନ୍ତିଙ୍କ
ଲିଖିତ 'ଜୟପୁର' ୩୪୫

# ରଚନାଳିରେ ଉପଲବ୍ଧ କିନ୍ତୁ ସୂଚୀରେ ନଥିବା
# କେତୋଟି ରଚନା

## (ପ୍ରଥମଭାଗ)


| ବିଷୟ | ପୃଷ୍ଠା | | |
|---|---|---|---|
| ହରିବୋଲିବା ବର୍ଣ୍ଣଦ୍ୱୟ | ୬୩ | ହୀରକ ନିଭ ଦେହଂ | ୮୮ |
| ହେ ଦ୍ୱିତୀୟ ମତି | ୬୩ | ପଲ୍ଲବୀ | ୮୯ |
| ଶ୍ଳୋକ ଏବଂ କ୍ରମେ ଷଡ଼ାନନ | ୬୪ | ଦେବଦେବକୃଷ୍ଣ | ୯୨ |
| ଗୋବିନ୍ଦ ମାଧବ | ୬୬ | ଧର ଧର ହେ ତ୍ରାହିମାଂ | ୯୫ |
| ଅରୁଣାଧର | ୬୬ | ଭଜାମି ଜନାର୍ଦ୍ଦନଂ | ୯୭ |
| ପାକହାଦି | ୬୭ | ରାଧିକାନନକଞ୍ଜ | ୯୯ |
| ଅତସୀ ଚମ୍ପକ | ୬୭ | ଜୟ ଜୟ କେଶବ | ୧୦୩ |
| ଶ୍ଳୋକ | ୭୯ | ଶ୍ରୀରାଧେଶନତ | ୧୦୫ |
| ଶ୍ଳୋକ | ୮୭ | ସବୁଠାରେ ଆପ | ୧୦୬ |


## (ଦ୍ୱିତୀୟ ଭାଗ)


| ବିଷୟ | ପୃଷ୍ଠା | | |
|---|---|---|---|
| ଶ୍ରୀ | ୧୦ | ସୂନ୍ୟସ | ୧୯୪ |
| ଶ୍ଳୋକଃ | ୪୦ | ଅଙ୍କାଙ୍କ ଗଣକେ | ୧୯୪ |
| ପଥମଧେ ହରି | ୪୦ | ଶ୍ଳୋକଃ | ୧୯୮ |
| ଭାବିଲେ ଅସତ୍ୟ | ୪୦ | ଶ୍ଳୋକାଃ | ୨୦୦ |
| ଶ୍ଳୋକଦ୍ୱୟଂ | ୭୪ | ସଂସାରପାଶ | ୨୨୪ |
| ଶ୍ଳୋକଃ | ୭୪ | ହୃଷୀକେଶ | ୨୨୫ |
| | | ଛୋଟପଦ | ୨୪୨ |



ଡକ୍ଟର ବାସନ୍ତୀ ମହାନ୍ତି
୧୯୬୦, ଅନ୍ଧୁକି କେନ୍ଦ୍ରାପଡା
୰ବାଉରୀବନ୍ଧୁ ମହାନ୍ତି
୰ଶୈଳବାଳା ମହାନ୍ତି

ଡଃ ବାସନ୍ତୀ ମହାନ୍ତି ଏକ ପ୍ରଖର ସାରସ୍ୱତ ପ୍ରତିଭା । ଗଳ୍ପ, କବିତା, ଉପନ୍ୟାସ ପ୍ରବନ୍ଧ, ଅନୁବାଦ, ଲୋକସାହିତ୍ୟ ଜୀବନୀ ଆଦି ବିଭିନ୍ନ ବିଭାଗରେ ଲେଖନୀ ଚାଳନାକରି ସେ ଓଡିଆ ସାହିତ୍ୟ ଜଗତରେ ନିଜପାଇଁ ଏକ ସମ୍ମାନଜନକ ଆସନ ପ୍ରତିଷ୍ଠା କରିପାରିଛନ୍ତି । ଉପକୂଳବର୍ତ୍ତୀ ଅଞ୍ଚଳ ଥିଲା ତାଙ୍କ ଜନ୍ମଭୂମି । କର୍ମଭୂମି ହେଲା ଉପାନ୍ତ ଅଞ୍ଚଳ । ସେହିହେତୁ ତାଙ୍କ ସୃଷ୍ଟିସମ୍ଭାରରେ ଉପକୂଳବର୍ତ୍ତୀ ଅଞ୍ଚଳର ସଂଘର୍ଷ ସଂଘାତମୟ ଜୀବନର ନିରୋଳ ଚିତ୍ର ଯେପରି ଜୀବନ୍ତ ସରଳ ନିଷ୍କପଟ ଜନଜାତିଙ୍କ ନିପୀଡିତ ଅଥଚ ଜୀବନକୁ ନିବିଡ଼ ଭାବରେ ଭଲ ପାଉଥିବା ପ୍ରକୃତି ଭିତରେ ନିଜକୁ ସଂପୂର୍ଣ୍ଣ ହଜେଇ ଦେଉଥିବା ଚରିତ୍ରଗୁଡିକ ସେହିପରି ଗଭୀର ଜୀବନ ବୋଧରେ ଚଳଚଞ୍ଚଳ । ଦୈନିକ ସଂବାଦପତ୍ରରେ ସ୍ତମ୍ଭ ଲେଖି ସେ ବହୁଚର୍ଚ୍ଚିତା । ତାଙ୍କର ଗଳ୍ପଗୁଡିକ ଯେମିତି ପାଠକ ମନକୁ ଆକ୍ରାମାକ୍ତା କରିଦିଏ ସ୍ତମ୍ଭଗୁଡିକ ମଧ୍ୟ ଠିକ୍ ସେମିତି ଭାବ ଉଦ୍ରେକକାରୀ ସମୟୋଚିତ ଓ ବୁଦ୍ଧିଦୀପ୍ତ । ଅନ୍ୟୁନ୍ୟ ପଚିଶିରୁ ଉର୍ଦ୍ଧ୍ୱ ପୁସ୍ତକର ସେ ରଚୟିତ୍ରୀ ।

ବହୁ ଘଟଣାର ଘନାଘଟା ଭିତରେ ଜୀବନ ଅତିବାହିତ କରିଥିବା ଜୟପୁର ରାଜା ବିକ୍ରମ ଦେବବର୍ମା ଓଡିଆ ଭାଷା ସାହିତ୍ୟ ପାଇଁ ଜାଗ୍ରତ ପ୍ରହରୀ ସଦୃଶ ଥିଲେ । ସେହି ଯୋଗଜନ୍ମା ପୁରୁଷଙ୍କ ସଂପର୍କରେ ଗବେଷଣାଧର୍ମୀ ଆଲୋଚନା ହେଉଛି ଉପାନ୍ତ ଅଞ୍ଚଳ ଭାଷା ସାହିତ୍ୟର ଜାଗ୍ରତ ପ୍ରହରୀ ବିକ୍ରମଦେବ ବର୍ମା । ତାଙ୍କର ଅନ୍ୟାନ୍ୟ ପୁସ୍ତକ ପରି ଏ ପୁସ୍ତକଟି ମଧ୍ୟ ଗବେଷକ ଓ ପାଠକମାନଙ୍କ ପାଇଁ ଉପାଦେୟ ହେବ । ସନ୍ଦେହ ନାହିଁ ।

ପ୍ରକାଶକ

ଦିଗ୍ ଦିଗନ୍ତ